ଆଦିବାସୀ ଅଞ୍ଚଳର ସ୍ଥିତି ?

ପରିଶିଷ୍ଟ

—୧—

ଭାରତ ଜନ ଆନ୍ଦୋଳନ

# ହିମାଳୟ ବି ଦୋହଲିଗଲା ।

ଭୁରିଆ କମିଟୀଙ୍କ ରିପୋର୍ଟର ସନ୍ଦର୍ଭରେ
ଆଦିବାସୀ ସ୍ୱାୟତ୍ତ ଶାସନ ନିମନ୍ତେ ପ୍ରବର୍ତ୍ତିତ

## ପ୍ରଥମ କେନ୍ଦ୍ରୀୟ ଆଇନ

*ମୂଳ ରଚନା :*

**ଡ଼ଃ ବ୍ରହ୍ମଦେବଶର୍ମା**

ଅଧ୍ୟକ୍ଷ, ଆଦିବାସୀ ସ୍ୱାୟତ୍ତ ଶାସନ ନିମନ୍ତେ ଜାତୀୟ ସାମୁଖ୍ୟ
(ଭାରତ ଜନ ଆନ୍ଦୋଳନ)

*ଅନୁବାଦ :*

**ସୁବାସ ପାଲ୍**

ସହଭାଗୀ ବିକାଶ ଅଭିଯାନ, ଭୁବନେଶ୍ୱର

# ସ୍ୱାଗତଂ

ଗ୍ରାମ ସ୍ୱରାଜ ସ୍ଥାପନା ଦିଗରେ ଦେଶବ୍ୟାପୀ ଚାଲିଥିବା ଆମର ଆନ୍ଦୋଳନରେ ଆପଣଙ୍କୁ ସ୍ୱାଗତ ଜଣାଉଛୁଁ । ଅଧିକ ସୂଚନା ନିମନ୍ତେ ନିମ୍ନୋକ୍ତ ଯେ କୌଣସି ଠିକଣାରେ ଯୋଗାଯୋଗ କରନ୍ତୁ :

୧. ଆଡ଼ଭୋକେଟ୍ ପ୍ରଦୀପ ପ୍ରଭୁ, ନେସ୍‌ନାଲ କନ୍‌ଭେନର
ଏନ.ଏଫ. ଟି. ଏସ୍. ଆର., ୩, ଏଣ୍ଟ୍ରି ବରହାମ୍,
କାଣ୍ଟିଓ୍ୱାଡ଼ି, ମାଲୟନ, ଧାଉନୁ, ଥାନେ, ମହାରାଷ୍ଟ୍ର ପିନ - ୪୦୧୬୦୨
ଫୋନ- ୦୨୫୨୮ - ୨୨୭୬୦

୨. ଶ୍ରୀ ଭୁବନ ମୋହନ ମୁଣ୍ଡା
୪୯, ଏ.ଜି. କଲୋନି କଡ଼ୁ, ରାଞ୍ଚି, ଫୋନ - ୦୬୫୧ - ୨୦୧୫୬୪

୩. ଶ୍ରୀ ବିଜୟ ଲପାଲିକର, ଏଫ - ୧, ଚେନାବ ଆପାର୍ଟମେଣ୍ଟ, ପ୍ରଶାନ୍ତ ନଗର, ନାଗପୁର, ଫୋନ - ୦୭୧୨ - ୨୨୪୫୩୩

୪. ଶ୍ରୀ ବିଜୟ / ନିକୁଞ୍ଜ : ଆଦିବାସୀ ମୁକ୍ତି ସଂଗଠନ ସେନ୍ଧଆ, ଖରଗାଁ, ଜି. ରାୟପୁର ମଧ୍ୟପ୍ରଦେଶ, ଫୋନ - ୦୭୨୮୧ - ୨୩୬୫୯ ।

୫. ଶ୍ରୀ ଜୟନ୍ତ ବର୍ମା : ରୁସେଲ ଛକ୍, ନାପିଏର ଟାଉନ, ଜବଲପୁର, ଫୋନ - ୦୭୬୧ - ୨୩୪୩୨ ।

୬. ଶ୍ରୀ କେ.ପି ରାଓ, ୧୦୮C, ରବିନ୍ଦ୍ର ନଗର, ହବସିଗୁଡ଼ା, ହାଇଦ୍ରାବାଦ , ଫୋନ - ୦୪୦- ୬୭୨୭୨୫ ।

୭. ଶ୍ରୀ ସି.ଆର. ବିଜୟ, ଡକ୍ଟରସ କ୍ୱାଟର, ଶ୍ରୀ ରାମକୃଷ୍ଣ ହସପିଟାଲ, ଆଭାରାମ ପାଲାୟମ ରୋଡ଼, କୋଇମ୍ବଟୋର, ତାମିଲିନାଡୁ ।

୮. ଡ଼ଃ. ବିନୟନ : ନଭଦା, ପୋ : ନୌବ୍ରୁ, ଜହାନବାଦ, ବିହାର, (ସମ୍ପାଦକ ବି.ଜେ.ଏ.)

୯. ଡ଼ଃ. ବ୍ରହ୍ମଦେବ ଶର୍ମା : ମାଓ୍ୱାଲିଭଙ୍ଗା, ଦିଲମିଲି, ବସ୍ତର, ମଧ୍ୟପ୍ରଦେଶ, କିମ୍ବା ୧୦/୧୧୦, ନିଉ ଶାନ୍ତିନଗର ରାଇପୁର, ଫୋନ - ୦୭୭୧ - ୪୨୬୭୭୨ ।

୧୦. ଶ୍ରୀ ଇଡ଼ୋ ମଣ୍ଡଳ
ନିଖିଳ ଓଡ଼ିଶା ଆଦିବାସୀ ମଞ୍ଚ, ପୋ : ରଙ୍ଗାଇଲୁଣ୍ଡା, ବ୍ରହ୍ମପୁର, ଜି : ଗଞ୍ଜାମ,
ପିନ - ୭୬୦୦୦୭

୧୧. ଶ୍ରୀ ଜଗଦୀଶ ପ୍ରଧାନ,
ଡ୍ୟୁପ୍ଲେକ୍ସ - ୫, ଶୈଳଶ୍ରୀ ବିହାର, ଭୁବନେଶ୍ୱର - ୭୫୧ ୦୧୬
ଫୋନ - ୪୪୦୪୭୪ ।

## ଲେଖକ ପରିଚିତି :

ଲେଖକ— ଡ଼ଃ ବ୍ରହ୍ମଦେବ ଶର୍ମା (୧୯୩୧) ଭାରତୀୟ ପ୍ରଶାସନିକ ସେବାର ବିଭିନ୍ନ ସ୍ତରରେ ଅଧିକାରୀ ରୂପରେ ଜିଲ୍ଲାପାଳ ଠାରୁ ସଚିବ ପର୍ଯ୍ୟନ୍ତ ବ୍ୟାପକ ଅନୁଭବରେ ପରିପୃଷ୍ଟ ଅଟନ୍ତି । କେନ୍ଦ୍ର ସରକାରଙ୍କ ଅଧୀନରେ ଜାତୀୟ ସ୍ତରରେ ଆଦିବାସୀ ବିକାଶ ନୀତି ସମ୍ବନ୍ଧରେ ମଧ୍ୟ ସେ ଦାୟିତ୍ତ୍ୱ ତୁଲାଇଥିଲେ । ଆଦିବାସୀ ଉପଯୋଜନା ସେହି ସମୟରେ ହୋଇଥିଲା ଏହାପରେ, ମଧ୍ୟ ପ୍ରଦେଶକୁ ଫେରି ସେ ଅନୁସୂଚୀତ ଜାତି ଏବଂ ଜନଜାତି କଲ୍ୟାଣ ବିଭାଗରେ ସଚିବ ରହିଥିଲେ ।

ଶେଷରେ, ଅନୁସୂଚୀତ ଜାତି ଓ ଜନଜାତି ଗୁଡ଼ିକର ମଙ୍ଗଳ ସମ୍ବନ୍ଧୀୟ ସର୍ବୋଚ୍ଚ ସାଂବିଧାନିକ ପଦରେ ବିନା ବେତନରେ ୧୯୯୧ ପର୍ଯ୍ୟନ୍ତ ମଧ୍ୟ ଦାୟିତ୍ୱ ତୁଲାଇଛନ୍ତି । ଏହି ସମୟରେ, ରାଜ୍ୟ ଗୁଡ଼ିକ ଦ୍ୱାରା ଅନୁସୂଚୀତ ଜାତି ଓ ଜନଜାତି ମାନଙ୍କର ସାଂବିଧାନିକ ଅଧିକାର ଉଲଂଘନ ଏବଂ ସାଂବିଧାନିକ ଦାୟିତ୍ୱ ତୁଲାଇବାରେ ଅବହେଳା ସଂପର୍କରେ ବ୍ୟାପକ ସମୀକ୍ଷା କରି ସେ ଏକ ରିପୋର୍ଟ (ବିବରଣୀ) ରାଷ୍ଟ୍ରପତିଙ୍କ ନିକଟରେ ଉପସ୍ଥାପନ କରିଥିଲେ । ଦେଶ ବିଦେଶରେ ମଧ୍ୟ ଆଦିବାସୀମାନଙ୍କ ଅଧିକାର ସଂବନ୍ଧରେ ଦୃଢ଼ମତ ସ୍ଥାପନ ପାଇଁ ସେ ଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କର ୨୮ତମ ରିପୋର୍ଟକୁ ସଂବିଧାନ ପରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କୃତି ବୋଲି ଧରାଯାଏ ।

ଭୂରିଆ ସମିତିର ଏକ ସକ୍ରିୟ ସଦସ୍ୟଭାବେ ଆଦିବାସୀ ସ୍ୱାୟତ୍ତ ଶାସନର ରୂପରେଖ ତିଆରି କରିବାରେ ତାଙ୍କର ଏକ ନିର୍ଣ୍ଣାୟକ ଭୂମିକା ରହିଛି । ଏହାର ସୁପାରିଶ ଲାଗୁ କରିବା ସଂପର୍କରେ ଅନୁସୂଚୀତ କ୍ଷେତ୍ରପାଇଁ ହୋଇଥିବା ଆଇନର ଅଧିକାର· ସମ୍ବନ୍ଧୀୟ ବ୍ୟାଖ୍ୟାକୁ ବିନାଦ୍ୱିଧାରେ ଯେ କୌଣସି ସ୍ତରରେ ଲାଗୁ କରାଯାଇପାରେ ।

# ବିଷୟ
# ଅନୁକ୍ରମଣିକା

# ହିମାଳୟ ବି ଦୋହଲିଗଲା।

# HIMALAYA BI DOHALIGALA

*ପ୍ରକାଶକ :*

**ଗାଉଁଲି ବିଗ୍ଚର**
ଡୁପ୍ଲେକ୍ସ - ୫
ଶୈଳଶ୍ରୀ ବିହାର,
ଭୁବନେଶ୍ୱର - ୭୫୧୦୧୬
ଫୋନ୍ - ୦୬୭୪-୪୪୦୪୭୪

*Publisher :*

**GAUNLI VICHAR**
Duplex - 5,
Sailashree Vihar,
Bhubaneswar - 751016
Phone : 0674-440474

ମୂଳ ରଚନା :
ଡ଼ଃ. ବ୍ରହ୍ମଦେଶ ଶର୍ମା

**Written by :**
Dr. B.D. Sharma

ଅନୁବାଦ :
ସୁବାସ ପାଲ

**Translated by :**
Subash Paul

*ପ୍ରଥମ ସଂସ୍କରଣ :*
୧, ଜୁଲାଇ, ୧୯୯୭

*First Edition :*
1st, July, 1997

*ମୁଦ୍ରଣ :*
ଶ୍ରୀ ଗୁରୁ ଗୌରାଙ୍ଗ ପ୍ରେସ୍
ଭୁବନେଶ୍ୱର

*Printed at :*
Sri Guru Gouranga Press
Bhubaneswar

*ସହଯୋଗ ରାଶି :*
ଦଶ ଟଙ୍କା ମାତ୍ର

*Suggested Contribution :*
**Rupees Ten Only**

# ନିଜକଥା

ସୁଦୃଢ଼ ହିମାଳୟ ପର୍ବତ ବି ଯେ ଦିନେ ଦୋହଲି ଉଠିବ, ହଠାତ୍ ଏକଥା ବିଶ୍ୱାସ କରି ହେଉନାହିଁ । କିନ୍ତୁ ଏଠାରେ କଥା କେବଳ ବିଶ୍ୱାସରେ ଅଟକି ରହିନାହିଁ, ଆଖି ସାମ୍ନାରେ ଯାହା ସବୁ ଘଟି ଯାଇଛି, ତାହାକୁ ଅନୁଭବ କରିବା ପାଇଁ ପଡ଼ିବ । ଯେପରି ଆମ ସମସ୍ତଙ୍କର ଅଲକ୍ଷ୍ୟରେ ଯୁଗ ଆଜି କଡ଼ ଲେଉଟିଯାଇଛି । ପୁରାତନର ଅଳନ୍ଧୁ ଭିତରୁ ନୂତନତା ମୁଣ୍ଡ ଟେକୁଛି । ଗ୍ଳାନି ଓ ଯନ୍ତ୍ରଣା ଭିତରୁ ଜୀବନ ପୁଣିଥରେ ଅଣ୍ଟା ସଳଖୁଛି । ଆଉ ଏ ମନ ଆଜି କାଗଜ ଉପରେ କଲମର ଗାର ଟାଣି ଗ୍ଚଲିଛି କାହିଁ କେତେ ଆଡ଼େ......... କେତେବେଳେ ବ୍ୟବସ୍ଥାର ଅଭେଦ୍ୟ ପ୍ରାଚୀରରେ ଧକ୍କା ହୋଇ ସରଳ - ନିରୀହ ମଣିଷମାନଙ୍କ ମଧ୍ୟରେ ତ ଆଉ କେଉଁଠି ଶାସନ ବ୍ୟବସ୍ଥା ଦ୍ୱାରା ଧ୍ୱସ୍ତ ବିଧ୍ୱସ୍ତ କୁଟୀର ଗୁଡ଼ିକ ଭିତରେ ହଜି ଯାଇଥିବା ଅନାମଧେୟ ଲୋକଙ୍କ ଭିତରେ ।

ଏକ କଳ୍ପନା, ଏକ ଆଦର୍ଶ, ''ଆମରି ଗାଁରେ ଆମେ ସରକାର'' ଏହା କ'ଣ ରାଜ୍ୟର ପ୍ରଭୁତ୍ୱ ବିରୁଦ୍ଧରେ ଆହ୍ୱାନ ଜଣାଇ ପାରିବ ? ''ଜଳ, ଜଙ୍ଗଲ ଓ ଜମି ଆମର,'' ଏହା କିପରି ସମ୍ଭବ ହେବ ? ଏହିପରି ଅନେକ ପ୍ରକାର ବିବାଦୀୟ ପ୍ରସଙ୍ଗ ଭିତରେ କିନ୍ତୁ ସରଳ ଆଦିବାସୀମାନଙ୍କୁ ତାଙ୍କର ଜୀବନର ଆଶା ଓ ଆକାଂକ୍ଷା ପୂରଣ ହେବା ପରି ଲାଗିଲା । ''ଆମ ଗାଁରେ ଆମେ ସରକାର''ର ଉଦ୍‌ଘୋଷଣା ଆଖିରେ ନୂଆ ଚମକ ଏବଂ ମନରେ ଏକ ଝଡ଼ ସୃଷ୍ଟି କରିବା ପାଇଁ ଯଥେଷ୍ଟ । ଖାଲି ସ୍ୱପ୍ନକୁ ନେଇ ବଂଚି ରହିବାର ମଣିଷ ପାଇଁ ବର୍ତ୍ତମାନ କ୍ଷଣର ଅନୁଭୁତିର ଅନେକ ମହତ୍ତ୍ୱ ରହିଛି । ଜୀବନରେ କେବଳ ସଂଘର୍ଷର ବିଭିଷୀକା ତ ଜନ୍ମରୁ ହିଁ ସାମନା କରିବାକୁ ହୋଇଆସିଛି । ସଂଘର୍ଷ ଭିତରେ ହିଁ ଆଜିଯାଏଁ ବଞ୍ଚିଆସିଛୁଁ ଓ ଆଗକୁ ବି ସେହି ସଂଘର୍ଷରେ ହିଁ ବଞ୍ଚିବୁଁ । କିନ୍ତୁ ଆଜିର ଏହି ସନ୍ଧିକ୍ଷଣରେ ଆଉ କିଛି ନ ହେଲେ ମଧ୍ୟ 'ଆମେ ଆମ ମନର ରାଜା' । ପ୍ରକୃତ ପ୍ରଶ୍ନତ ଆମ ମନୋଭାବନା ନେଇ, ଆମେ ସ୍ୱାଧୀନ, ଏହା ଅନୁଭବ କରିବା ପରେ ସଂଘର୍ଷର ଟଣା ଓଟରା ଏକ ଛୋଟ ଘଟଣା ହୋଇଯାଏ କାରଣ ସ୍ୱାଧୀନତାର ଭାବନା ଏବଂ ମାନ୍ୟତାକୁ ବନ୍ଦୀ କରି ରଖିହୁଏ ନାହିଁ ।

ସଂଘର୍ଷରେ ସରଳ ସମାଜ ଯାହା ଉଚିତ ମନେକଲା ସେହି କର୍ଯ୍ୟକଲା । ଏ ଜଙ୍ଗଲ ଆମର, ତେବେ ବାହାର ଲୋକେ କାହିଁକି ପ୍ରବେଶ କରିବେ ? ଏହି ସିଦ୍ଧାନ୍ତକୁ ନେଇ ଅଡ଼ି ବସିଲା । କେନ୍ଦୁପତ୍ର କଥାରେ ତ ପାଞ୍ଚବର୍ଷ ହେଲା ମାଲିକାନା ଦାବୀ କରି ନିଷ୍ପତ୍ତି କଲା ଯେ ଯଦି ପତ୍ର ଆମର ତେବେ ସରକାର କାହିଁକି ମୂଲ୍ୟ ସ୍ଥିର କରିବେ ? ତେଣୁ ସେ ନିଜେ ଏହାର ଦାମ୍ ଘୋଷଣା କଲା । କିନ୍ତୁ ପ୍ରଚଳିତ ଶାସନ ବ୍ୟବସ୍ଥା ଏହା ଗ୍ରହଣ କଲାନାହିଁ - ପରିହାସ କଲା । ଆଦିବାସୀ ସମାଜ କିନ୍ତୁ ଏଥିରେ ବିଚଳିତ ହେଲା ନାହିଁ । କେନ୍ଦୁପତ୍ର ଆଉ ତୋଳିଲା ନାହିଁ । ଅନେକ କ୍ଷତି ସହିଲା କିନ୍ତୁ କିଛି ଯାଏ ଆସେ ନାହିଁ କାରଣ ଆଦିବାସୀତ କ୍ଷତିର ସଉଦା ହିଁ ସର୍ବଦା କରି ଆସିଛି । ଆଜି ପର୍ଯ୍ୟନ୍ତ ଏହାର ମୋକଦମା ଗ୍ଚଲିଛି । ଜଣେ ମୁଖ୍ୟମନ୍ତ୍ରୀ ରାଜ୍ୟ ବିଧାନ ସଭାରେ ଘୋଷଣା ମଧ୍ୟ କରି ଦେଇଥିଲେ - ଶ୍ରମିକ, ଶ୍ରମିକ ନୁହେଁ, ସେ ମାଲିକ । କିନ୍ତୁ କ'ଣ ହେଲା କେଜାଣି ମାଲିକ ଆଉ ମାଲିକ ହୋଇ ପାରିଲା ନାହିଁ । ଲୁଣ୍ଠନକାରୀମାନେ ମାଲିକାନା ଜାହିର କଲେ । ଲୁଣ୍ଠନ କାରୀମାନଙ୍କ କବଳରୁ ଆମେ ୧୯୭୪ ମସିହାରେ ଜଙ୍ଗଲ ଛଡ଼ାଇ ଆଣିବା ପାଇଁ ଗ୍ଚହିଁଲୁ । ଅତି କମ୍‌ରେ ଲଘୁ ବନଜାତ ଦ୍ରବ୍ୟ ଗୁଡ଼ିକ

ଉପରେ ଆଦିବାସୀମାନଙ୍କର ଅଧିକାର ରହୁ । ପ୍ରସ୍ତାବ ଗୃହୀତ ହୋଇଗଲା କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ଏହାକୁ କେହି ଗ୍ରହଣ କଲେ ନାହିଁ । କିନ୍ତୁ ପରିଶେଷରେ ସଂସଦର ଏକ ଛୋଟ ଆଇନ ସବୁ କିଛିକୁ ବଦଳାଇ ଦେଲା । ସଂବିଧାନର ସାଧାରଣ ଅଞ୍ଚଳ ପାଇଁ ଥିବା ପଞ୍ଚାୟତ ବ୍ୟବସ୍ଥାକୁ ଅନୁସୂଚୀତ କ୍ଷେତ୍ରପାଇଁ ଅନେକ ସଂଶୋଧନ କରାଯାଇ ଲାଗୁ କରାଗଲା । ସଂବିଧାନରେ ପ୍ରଥମଥର ପାଇଁ ଗାଁ ସମାଜକୁ ଔପଗ୍ରହିକ ସ୍ୱୀକୃତି ଦେଇ ସ୍ଥାପିତ କରାଗଲା । ଗାଁ ସମାଜ ନିଜର ପାରଂପରିକ ରୀତିରେ ନିଜର କାର୍ଯ୍ୟକଳାପ ନିଜେ ପରିଚାଳନା କରିବେ । ବର୍ତ୍ତମାନଠାରୁ ତାହାର ଏହି ବୈଧାନିକ ସାବ୍ୟସ୍ତ ଅଧିକାରକୁ ତାହାଠାରୁ କେହି ଛଡ଼ାଇ ନେଇ ପାରିବେ ନାହିଁ । ବର୍ତ୍ତମାନ ସେ ନିଜର କ୍ଷେତ୍ରାଧିକାର, ଅସ୍ତିତ୍ୱ ଏବଂ ସ୍ଥିତି ରକ୍ଷା ନିମିତ୍ତ ସକ୍ଷମ ଅଟେ । ଏଥିପାଇଁ ତାର ବର୍ତ୍ତମାନ ସରକାରଙ୍କର ଚାଲିଆସୁଥିବା ସଂରକ୍ଷଣ ରୂପକ ଆଶାବାଡ଼ିର ଆବଶ୍ୟକ ହେବ ନାହିଁ ।

ଗ୍ରାମ ସଭା ରୂପରେ "ଗାଁ ସମାଜ" ବର୍ତ୍ତମାନ ନୂଆ ବ୍ୟବସ୍ଥା ଅନୁଯାୟୀ ନିଜ ସମ୍ବଳର ରକ୍ଷା, ସମାଜରେ ବିବାଦର ସମାଧାନ ଇତ୍ୟାଦିର ଦାୟିତ୍ୱ ବହନ କରିବ । ମଦ୍ୟପାନ ନିଷେଧ ଓ ସେବନ ସମ୍ବନ୍ଧରେ ବ୍ୟବସ୍ଥା ନିଜେ କରିବ । ନିଜ ଜମିର ରକ୍ଷା ନିଜେ କରିବ । ଭୂ-ଅର୍ଜନ ବା ଜମିଦଖଲ ପୂର୍ବରୁ ତା ସହିତ ପରାମର୍ଶ କରାଯିବ । ଟଙ୍କା-ପଇସା, ନେଣ-ଦେଣ, ହାଟ-ବଜାର, ଗାଁ ସ୍କୁଲ ଓ ସ୍ୱାସ୍ଥ୍ୟ ସେବା କେନ୍ଦ୍ର ଉପରେ ନିୟନ୍ତ୍ରଣ କରିବ । ଗାଁର ବିକାଶ କାର୍ଯ୍ୟକ୍ରମ ପାଇଁ ସେ ମଂଜୁରୀ ଦେବା ସଂଗେ ସଂଗେ ଏବାବଦରେ ଖର୍ଚ୍ଚ ହୋଇଥିବା ଅର୍ଥ ସମ୍ବନ୍ଧୀୟ ପ୍ରମାଣପତ୍ର ମଧ୍ୟ ଦେବ । ଲଘୁ ବନଜାତ ଦ୍ରବ୍ୟର ସେ ବର୍ତ୍ତମାନ ମାଲିକ । "ଅଣ୍ଡା" ମୋର ହେଲେ କୁକୁଡ଼ା କାହାର ହେବ । ଏହି ଗୋଲକ ଧନ୍ଦାର ସମାଧାନ କେବେ ହୋଇପାରି ନ ଥିଲେ ମଧ୍ୟ ଏହାର କୌଣସି ଆବଶ୍ୟକତା ନାହିଁ । ଏହାର ଅର୍ଥ ସମସ୍ତେ ଜାଣନ୍ତି, ତେଣୁ ଆଉ ଡ଼ିଣ୍ଡିମ ବଜାଇବାର ଆବଶ୍ୟକତା ନାହିଁ ।

ଗାଁ ସମାଜକୁ ପ୍ରକୃତ ଗଣତନ୍ତ୍ର ଭାବନା ଅନୁଯାୟୀ ସର୍ବଶକ୍ତିସଂପନ୍ନ କରି ସଂବିଧାନର ଅନୁଚ୍ଛେଦ ୪୦ରେ ଦିଆଯାଇଥିବା ବ୍ୟବସ୍ଥା ସବୁ ପ୍ରଣୟନ କରିବା ବେଳେ କରାଯାଇଥିବା ଶପଥକୁ ସଂସଦ ଆଜି ପୂରଣ କରିଛି । ସଂବିଧାନର ସମସ୍ତ ଔପଗ୍ରହିକ ସଂସ୍ଥାଗୁଡ଼ିକୁ "ଗ୍ରାମ ଗଣ ରାଜ୍ୟ" ଭାବନାର ଢାଞ୍ଚାରେ ପକାଇବା ପାଇଁ ନିଆଯାଇଥିବା ପବିତ୍ର ସଂକଳ୍ପକୁ କାର୍ଯ୍ୟକାରୀ ନକରାଇ ଲୋକଙ୍କୁ ଭୁଲାଇ ଦିଆଯାଉଥିଲା । ଅନୁସୂଚୀତ କ୍ଷେତ୍ରରେ ନୂଆ ଆଇନ ବ୍ୟବସ୍ଥା, ସେହି ଶପଥକୁ କାର୍ଯ୍ୟକାରୀ କରିବା ଦିଗରେ, ପ୍ରଥମ ପଦକ୍ଷେପ । ହଁ ବହୁତ ଡ଼େରିରେ, ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବିତିଯିବା ପରେ, କିନ୍ତୁ ବିଳମ୍ବରେ ହେଲେ ବି ଅନ୍ତତଃ ଆରମ୍ଭ ତ ହୋଇଛି ।

ଏହା ସହିତ ଆମର ନିଜ ଦାୟୀତ୍ୱ ହଜାରେ ଗୁଣ ବଢ଼ିଯାଇଛି । ଏହି ସ୍ୱାୟତ୍ତଶାସନ ଡ଼ୋରି ଆମକୁ ମିଳିଯିବା ପରେ ବର୍ତ୍ତମାନ ଆମର ବିଶ୍ରାମ ନେବା ପାଇଁ ଅବସର ନାହିଁ । ଆସନ୍ତୁ, ପାଦକୁ ପାଦ ମିଳାଇ ଏକ ସଂଗରେ ଆଗକୁ ଚାଲିବା, 'ଆମରି ଗାଁରେ ଆମ ସରକାର' ବ୍ୟବସ୍ଥା ସାକାର କରିବା ପାଇଁ ସଂକଳ୍ପ ବଦ୍ଧ ହେବା ।

ଡ଼ଃ ବ୍ରହ୍ମଦେବଶର୍ମା
୧, ଜାନୁଆରୀ, ୧୯୯୭
ନୂଆଦିଲ୍ଲୀ

# ପ୍ରଥମ ଅଧ୍ୟାୟ

## ଅନୁସୂଚୀତ ଅଞ୍ଚଳରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପାଇଁ ପଞ୍ଚାୟତରାଜ ଆଇନର ନୂତନ ରୂପରେଖ

ଭାରତୀୟ ସମ୍ବିଧାନର ଭାଗ ୯ରେ ଥିବା ପଞ୍ଚାୟତ ଶାସନ ବ୍ୟବସ୍ଥାର ଏକ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ କରି, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପଞ୍ଚାୟତ ଶାସନ ବ୍ୟବସ୍ଥାର ନୂତନ ଏବଂ ପରିବର୍ତ୍ତିତ ଆଇନକୁ ରାଷ୍ଟ୍ରପତି ଗତ ୧୯୯୬ ଡ଼ିସେମ୍ବର ୨୪ ତାରିଖ ଦିନ ବିଧିବଦ୍ଧ ଭାବେ ମଂଜୁରୀ ପ୍ରଦାନ କରିଛନ୍ତି । ଏହି ନୂତନ ଐତିହାସିକ ପଦକ୍ଷେପର ରୂପରେଖ ନିମ୍ନରେ ଦିଆଗଲା ।

### ୧. ପରମ୍ପରା ଗତ ଆଦିବାସୀ ବ୍ୟବସ୍ଥାକୁ ସାମ୍ବିଧାନିକ ସ୍ୱୀକୃତି :

ଏହି ନୂତନ କେନ୍ଦ୍ରୀୟ ଆଇନର ପ୍ରଥମ ଉଲ୍ଲେଖନୀୟ କଥା ହେଲା ଯେ, ଆଦିବାସୀମାନଙ୍କର ପାରଂପରିକ ଜୀବନ ଯାପନ ପ୍ରଣାଳୀର ମୁଖ୍ୟ ନିୟମ ଓ ପ୍ରଥା ଗୁଡ଼ିକୁ ଗ୍ରହଣ କରି ନିଆଯାଇ, ରାଜ୍ୟ ବିଧାନ ସଭା ଗୁଡ଼ିକୁ ସ୍ପଷ୍ଟ ନିର୍ଦ୍ଦେଶ ଦିଆଯାଇଛି ଯେ ରାଜ୍ୟ ସରକାରମାନେ ଆଦିବାସୀମାନଙ୍କ ଜୀବନ ଯାପନର ମୌଳିକ ପରଂପରା ବା ପ୍ରଥାକୁ ବିରୋଧ କଲାଭଳି କୌଣସି ଆଇନ ପ୍ରଣୟନ କରି ପାରିବେ ନାହିଁ । ସମ୍ବିଧାନ ପ୍ରଣୟନ ସମୟରୁ ହିଁ, ଆଦିବାସୀ ସମାଜର ଜରୁରୀ ଆବଶ୍ୟକତା ଓ ପ୍ରଥା ଗୁଡ଼ିକୁ ଗୁରୁତ୍ୱ ଓ ଧ୍ୟାନ ଦିଆଯାଇଥିଲେ ମଧ୍ୟ ପ୍ରକୃତ ପକ୍ଷରେ ଦେଖାଯାଇଛି ଯେ କେନ୍ଦ୍ର ଓ ରାଜ୍ୟର କେତେକ ସାଧାରଣ ଆଇନ, ଆଦିବାସୀ ଅଞ୍ଚଳରେ ଜନସାଧାରଣଙ୍କ ଉନ୍ନତି ସାଧନ କରିବା ପରିବର୍ତ୍ତେ କ୍ଷତି ସାଧନ କରୁଥିଲା । କିନ୍ତୁ ବର୍ତ୍ତମାନ୍ ଏହି ନୂତନ ଆଇନ ଫଳରେ, ଆଦିବାସୀ ପରଂପରାକୁ କ୍ଷୁର୍ଣ୍ଣ କଲାଭଳି କୌଣସି ଆଇନ ପ୍ରଣୟନ କରାଯାଇ ପାରିବ ନାହିଁ ବା ଏଭଳି ଆଇନ ପ୍ରଣୟନ ପୂର୍ବରୁ ରୋକାଯାଇପାରିବ । ଆହୁରି ମଧ୍ୟ, ସାରା ଦେଶରେ ବିଭିନ୍ନ ଆଦିବାସୀ ସମାଜର ଆର୍ଥିକ ଓ ସାମାଜିକ ଅଭିବୃଦ୍ଧି ପାଇଁ ପ୍ରକୃତରେ ଧ୍ୟାନ ଦିଆଯାଇପାରିବ ଏବଂ ଆଦିବାସୀ ସମାଜର ମୌଳିକ ପରଂପରାକୁ ମୂଳଦୁଆ କରି ଏକ ନୂତନ ବ୍ୟବସ୍ଥା ଗଢ଼ି ଉଠିବାରେ ଏହି ନୂତନ ଆଇନ୍ ସହାୟକ ହେବ ।

### ଲଘୁ ସମାଜ ବା କ୍ଷୁଦ୍ର ସାମାଜିକ ଗୋଷ୍ଠୀକୁ ସ୍ୱୀକୃତି :

ଗାଁ ସ୍ତରରେ ପରଂପରାଗତ ପ୍ରଥା ଅନୁଯାୟୀ, ଜୀବନ ଯାପନ କରି ଆସୁଥିବା ଛୋଟ ଛୋଟ ସାମାଜିକ ଗୋଷ୍ଠୀର ସ୍ଥିତିକୁ ଏହି ନୂତନ ଆଇନ୍‌ରେ ସଂପୂର୍ଣ୍ଣ ମାନ୍ୟତା

ପ୍ରଦାନ କରାଯାଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ରାଜ୍ୟ ସରକାରମାନେ ପ୍ରକୃତ କ୍ଷେତ୍ରରେ ଏହାକୁ ନମାନି, ଆଦିବାସୀ ସାମଜ କଥା ଉଠିଲେ ସେମାନଙ୍କ ''ସମାଜ କେଉଁଠି ?'' କହି ଏଡ଼ାଇ ଦେଇ ଆସୁଥିଲେ ଏବଂ ଏହି ଭ୍ରାନ୍ତ ଧାରଣା ଯୋଗୁଁ ହିଁ ରାଜ୍ୟ ଗୁଡ଼ିକରେ ଯେଉଁ ପଞ୍ଚାୟତ ଆଇନ୍ ସବୁ ପ୍ରଣୟନ କରାଗଲା ସେସବୁର ସାଧାରଣ ଆଦିବାସୀଙ୍କ ଜୀବନର ମୌଳିକ ସମସ୍ୟାବଳୀ ସହ କୌଣସି ସଂପର୍କ ରହୁନଥିଲା । ଫଳ ସ୍ୱରୂପ ବହୁ କ୍ଷେତ୍ରରେ ଏହି ପଞ୍ଚାୟତ ଗୁଡ଼ିକର ସରପଞ୍ଚ ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନେ ଦୁର୍ନୀତି, ସ୍ୱେଚ୍ଛାଚାର ଓ ମନମୁଖୀ କାର୍ଯ୍ୟ କଳାପରେ ବୁଡ଼ି ରହିବା ଯୋଗୁଁ ଗ୍ରାମାଞ୍ଚଳର ଆଇନ୍ ଶୃଙ୍ଖଳା ଓ ସାଧାରଣ ଜନ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଲା ।

ଗ୍ରାମର ମୌଳିକତାକୁ ଆଖି ଆଗରେ ରଖି, ଏହି ନୂତନ ଆଇନରେ ଥିବା ବିଭିନ୍ନ ବ୍ୟବସ୍ଥାର ପରିଭାଷା ନିର୍ଣ୍ଣୟ କରାଯାଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ସରକାରୀ ରେକର୍ଡ଼ ପତ୍ରରେ ଯାହାକୁ ଗ୍ରାମ କୁହାଯାଉଥିଲା ନୂଆ ବ୍ୟବସ୍ଥା ଅନୁଯାୟୀ ତା'ର ଅର୍ଥ ଓ ପରିସର ବଦଳି ଯାଇଛି । ଏହି ନୂତନ ଆଇନ ଅନୁଯାୟୀ ଯେ କୌଣସି ଏକ ବା ଏକାଧିକ ଜନବସତିରେ ରହୁଥିବା ଅଧିବାସୀମାନେ ଆପୋଷ ମିଳାମିଶା ଏବଂ କେତେକ ନିୟମ ମାଧ୍ୟମରେ ସେମାନଙ୍କର ଦୈନନ୍ଦିନ ଜୀବନ ବ୍ୟବସ୍ଥାକୁ ଯଦି ଏକ ନିର୍ଦ୍ଦିଷ୍ଟ ସମାଜ ବା ଗୋଷ୍ଠୀ ରୂପେ ନିଜେ ଗ୍ରହଣ କରୁଥିବେ ତେବେ ତାହାକୁ ଗ୍ରାମର ସ୍ୱୀକୃତି ଦିଆଯିବ ଓ ପ୍ରତ୍ୟେକ ଗ୍ରାମ ପାଇଁ ଏକ ଗ୍ରାମ ସଭା ରହିବ । ଏହିଭଳି, ପାରମ୍ପରିକ ପ୍ରଥା ଅନୁଯାୟୀ ଏକ ନିର୍ଦ୍ଦିଷ୍ଟ ସମାଜ ରୂପେ ଜୀବନ ଯାପନ କରୁଥିବା ଏକ ଜନବସତି, ପଡ଼ା ବା ଜନସମୁହକୁ ଔପଗ୍ରିକ ଭାବେ ନୂତନ ଆଇନରେ ଗ୍ରାମସଭା ଆଖ୍ୟା ଦିଆଯାଇଅଛି ।

ବର୍ତ୍ତମାନ ପର୍ଯ୍ୟନ୍ତ ସରକାରୀ ସ୍ତରରେ ଏକ ନିର୍ଦ୍ଦିଷ୍ଟ ଲୋକ ସଂଖ୍ୟାକୁ ନେଇ ଆଖପାଖ ଜନବସତି କିମ୍ବା ଛୋଟ ଛୋଟ ଗାଁ ଗୁଡ଼ିକୁ ମିଶାଇ ଏକ ଗ୍ରାମସଭା ବା ପଞ୍ଚାୟତ ଗଠନ କରାଯାଉଥିଲା । ବିହାର ରାଜ୍ୟରେ ପ୍ରାୟ ପାଞ୍ଚହଜାର ଲୋକ ସଂଖ୍ୟାକୁ ନେଇ ଏକ ପଞ୍ଚାୟତ ଗଠନ କରାଯାଉଥିଲା ଯେଉଁଥିରେ କି ସାଧାରଣତଃ ୭ ।୮ ଟି ଗାଁ ଗୋଟିଏ ପଞ୍ଚାୟତ ବା ଗ୍ରାମ ସଭାର ପରିସର ଭୁକ୍ତ ହେଉଥିଲେ । ଏହିଭଳି ଗ୍ରାମ ସଭା, କେବଳ ଜନଗହଳି ପୂର୍ଣ୍ଣ ହୋଇ ରହୁଥିଲା । ଫଳରେ ସାଧାରଣ ଲୋକମାନେ ଏଥିରେ କୌଣସି ମତବ୍ୟକ୍ତ କରିପାରୁନଥିଲେ କିମ୍ବା ସେମାନଙ୍କର କୌଣସି ଭୂମିକା ମଧ୍ୟ ରହୁନଥିବାରୁ ଏଥିପ୍ରତି ରୁଚି ରହୁ ନଥିଲା । ତେଣୁ ଲୋକଙ୍କୁ କୌଣସି ପ୍ରକାରେ ଏକାଠି କରି କିମ୍ବା କାଗଜରେ ଦସ୍ତଖତ କରାଇ ନେଇ ଗ୍ରାମ ସଭା ନାମରେ ପଞ୍ଚାୟତର ସରପଞ୍ଚ ବା ଗ୍ରାମ ସଭାର ଅଧ୍ୟକ୍ଷ ସାଧାରଣ ବିଧିକୁ ଯେନତେନ ପ୍ରକାରେଣ ରକ୍ଷା କରୁଥିଲେ ।

ନୂତନ ବ୍ୟବସ୍ଥା ସଂପୂର୍ଣ୍ଣ ରୂପେ ଏହାର ବିପରୀତ ଅଟେ । ଏହି ଅନୁସାରେ ବର୍ତ୍ତମାନ, ଯେଉଁଠି ଲୋକମାନେ ଏକାଠି ମିଳିମିଶି ଗୋଟିଏ ସାମାଜିକ ଗୋଷ୍ଠୀର ଭିତ୍ତିଭୂମି

ଉପରେ ଆଧାରିତ ପାରଂପରିକ ଜୀବନ ଯାପନ କରି ଆସୁଛନ୍ତି, ତାହାକୁ ଗ୍ରାମ ସଭାର ସ୍ୱୀକୃତି ମିଳିବ । ଫଳତଃ କୌଣସି ପଡ଼ା ବା ବସ୍ତିକୁ ମଧ୍ୟ ଗ୍ରାମ ସଭାର ମାନ୍ୟତା ମିଳିପାରିବ । ଏହିପରି ଭାବେ ଗୋଟିଏ ସାମାଜିକ ଗୋଷ୍ଠୀ ପୂର୍ବରୁ ଯେଉଁଭଳି ଜୀବନ ଯାପନ କରି ଆସୁଥିଲେ ଠିକ୍ ସେହିପରି ରହିବେ, କିନ୍ତୁ ତାହା ବର୍ତ୍ତମାନ ଆଇନ ସମ୍ମତ ହେବ ଏବଂ ଏହାକୁ ଗ୍ରାମସଭା ରୂପେ ସାମ୍ବିଧାନିକ ସ୍ୱୀକୃତି/ମାନ୍ୟତା ପ୍ରଦାନ କରିବା ଦ୍ୱାରା ଅନ୍ୟ କେହି ଏଥିରେ ହସ୍ତକ୍ଷେପ କରି ପାରିବେ ନାହିଁ ।

ଏହିଭଳି, କେନ୍ଦ୍ରୀୟ ଆଇନର ପରିବର୍ତ୍ତନ କ୍ରମରେ ଗ୍ରାମ ସମାଜର ପରଂପରାଗତ ସ୍ୱରୂପକୁ ଗ୍ରାମସଭା ନାମରେ ସାମ୍ବିଧାନିକ ସ୍ୱୀକୃତି ପ୍ରଦାନ କରି ଚଳି ଆସୁଥିବା ପରଂପରା ଓ ଆଧୁନିକ ବ୍ୟବସ୍ଥାକୁ ଏକ ଓ ଅଭିନ୍ନ ବୋଲି ବିବେଚନା କରାଯାଇଅଛି । ତେଣୁ ନୂତନ ଆଇନ ବ୍ୟବସ୍ଥା ଅନୁଯାୟୀ ଗ୍ରାମ ସମାଜ ଓ ଗ୍ରାମସଭା ଉଭୟ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ଅଟନ୍ତି ।

## (୨)

## ଗ୍ରାମ ସଭା ବା ଗାଁ ସମାଜର କାର୍ଯ୍ୟ ପରିସର

ପୂର୍ବରୁ ସାମାଜିକ ପରମ୍ପରାର ମୂଲ୍ୟବୋଧ ପ୍ରତି ସମ୍ବିଧାନର ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରାଯାଇଥିଲେ ମଧ୍ୟ କାର୍ଯ୍ୟ କ୍ଷେତ୍ରରେ ଏହାର କୌଣସି ସାମଞ୍ଜସ୍ୟ ରହୁନଥିଲା । ତେଣୁ ନୂତନ ଆଇନ ବ୍ୟବସ୍ଥା ଅନୁଯାୟୀ କାର୍ଯ୍ୟ କ୍ଷେତ୍ରରେ ଯେପରି ଏହି ମୂଲ୍ୟବୋଧର ଅବକ୍ଷୟ ଘଟିବ ନାହିଁ, ସେଥିପ୍ରତି ଧ୍ୟାନ ଦିଆଯାଇଛି ।

ପ୍ରକୃତ ଅର୍ଥରେ କହିବାକୁ ଗଲେ, ଏହି ବ୍ୟବସ୍ଥା ଗାଁ ସମାଜର ସାର୍ବଭୌମ ଅଧିକାର ସମ୍ବନ୍ଧୀୟ ଘୋଷଣା ପତ୍ର ଅଟେ । କାରଣ ସମାଜର ସଂସ୍କୃତି ଏବଂ ପରମ୍ପରା ଗତ ପରିଚୟ ହିଁ ଏହାର ମୂଳ ଆଧାର ଅଟେ ଏବଂ ଏହି ସମ୍ବନ୍ଧୀୟ ଅଧିକାରକୁ ସାମ୍ବିଧାନିକ ସ୍ୱୀକୃତି ଦିଆଯାଇ ଏଇ ନୂତନ ଆଇନରେ ସ୍ପଷ୍ଟ ଉଲ୍ଲେଖ କରାଯାଇଛି ଯେ, ପ୍ରତ୍ୟେକ ଗ୍ରାମସଭା, ନିଜ ସାମାଜିକ ପରଂପରା, ସଂସ୍କୃତି, ସାମୁହିକ ସଂପଦ ଓ ବିବାଦ ସମାଧାନ ପାଇଁ ପାରମ୍ପରିକ ନୀତିନିୟମ ଓ ପ୍ରଥା ଅନୁସାରେ କାର୍ଯ୍ୟ କରିବା ପାଇଁ ସକ୍ଷମ ହେବେ (ଧାରା ୪-ଘ) ।

ସାଧାରଣ କଥାରେ, ସାମାଜିକ ପରମ୍ପରା ଏବଂ ସ୍ଥିତିର ରକ୍ଷା ନିମନ୍ତେ ଗାଁ ସମାଜ ସକ୍ଷମ ଏହା ଉଲ୍ଲେଖ କରିବା ପରେ, ଆଉକିଛି କହିବା ଆବଶ୍ୟକ ନୁହେଁ , କିନ୍ତୁ ଏଥିରେ ନିର୍ଦ୍ଦିଷ୍ଟ ଭାବରେ ସାମୁହିକ ସଂପଦ ବା ଗୋଷ୍ଠୀ ସଂପଦକୁ ସାମିଲ୍ କରାଯାଇ ନୂତନ ଆଇନର ପରିସରକୁ ଆହୁରି ଅଧିକ ଗୁରୁତ୍ୱ ଦିଆଯାଇଅଛି ।

ଆଦିବାସୀ ସମାଜର ସାମାଜିକ ସ୍ଥିତି ଏହାର ଜନବସତିର ଏକ ଅଭିନ୍ନ ଅଙ୍ଗ ଅଟେ ଏବଂ ଏହି ବସତିରେ ଯେଉଁ ଜଳ-ଜଙ୍ଗଲ-ଜମି ରହିଛି, ଏହାହିଁ ଆଦିବାସୀଙ୍କ ଜୀବନ ଓ ସ୍ଥିତିର ମୂଳଦୁଆ ଅଟେ । ଏହି ସବୁର ସମଷ୍ଟିକୁ ନେଇ ସାମୁହିକ ସଂପଦ ହିଁ ଏହାର ଅସ୍ତିତ୍ୱର ମୂଳ ଆଧାର ଏବଂ ଏହି ସଂପଦ ଉପରେ ଆଦିବାସୀ ସମାଜର ଅଧିକାରକୁ ମାନ୍ୟତା ଦେବା ନିଶ୍ଚିତ ରୂପେ ଏକ ଗୁରୁତ୍ୱ ପୂର୍ଣ୍ଣ ନିର୍ଣ୍ଣୟ ଅଟେ । ନଚେତ୍ ଆଦିବାସୀ ସ୍ୱୟଂ ଶାସନ ବ୍ୟବସ୍ଥାର ପରିକଳ୍ପନା ଅପୁର୍ଣ୍ଣ ରହିଯାଇଥାଆନ୍ତା ।

ଏହି ଘଟଣା କ୍ରମରେ ବିବାଦ ସମାଧାନ ସମ୍ବନ୍ଧୀୟ ପାରଂପାରିକ ନୀତି ନିୟମ ପ୍ରଥାକୁ ସ୍ୱୀକୃତି ଦେବା ମଧ୍ୟ ମହତ୍ତ୍ୱପୂର୍ଣ୍ଣ ଅଟେ । ରାଜ୍ୟ ପ୍ରଶାସନରେ ସମସ୍ତ ପ୍ରକାର ବିବାଦର ସମାଧାନ ପାଇଁ ଔପଚାରିକ ବ୍ୟବସ୍ଥାମାନ ରହିଛି ଏବଂ କୌଣସି ବିବାଦର ସମାଧାନ ସଂପର୍କରେ ଲୋକମାନେ ଆଇନ ଅନୁଯାୟୀ ସଂପୃକ୍ତ ବିଭାଗର ଆଶ୍ରୟ ନେଇଥାଆନ୍ତି । କିନ୍ତୁ ଦୁଃଖର କଥା ଏହି ଯେ, ଆମ ଦେଶ ସ୍ୱାଧୀନ ହେବାର ୫୦ ବର୍ଷ ପରେ ମଧ୍ୟ ଏହି ଉପନିବେଶୀୟ ବ୍ୟବସ୍ଥାରେ ଲୋକମାନଙ୍କର ସମସ୍ୟାର ସମାଧାନ ହୋଇ ନାହିଁ ବରଂ ସମସ୍ୟାଟି ବଢ଼ି ବଢିଚାଲିଛି । ଏହି ପରିପେକ୍ଷୀରେ ଆଦିବାସୀ ସମାଜର ସ୍ୱାତନ୍ତ୍ର୍ୟତା ହେଲା ଯେ ସେମାନେ ନିଜର ବିଭିନ୍ନ ସାମାଜିକ ବ୍ୟବସ୍ଥା ଓ ଚଳଣି ସମ୍ବନ୍ଧୀୟ ବିବାଦକୁ ସ୍ୱତନ୍ତ୍ର ଭାବରେ ନିଜେ ହିଁ ସମାଧାନ କରିଥାଆନ୍ତି ଏବଂ ଏହା ଆଇନ ସମ୍ମତ ହୋଇ ନଥିବାରୁ, ପ୍ରଶାସନର ସାହାଯ୍ୟ ଲୋଡ଼ିବା ବେଳେ ଏହା ଉଭୟଙ୍କ ମଧ୍ୟରେ ବିବାଦୀୟ ପରିସ୍ଥିତି ସୃଷ୍ଟି କରିଥାଏ ଏବଂ ପୁନରାୟ, ସେମାନେ ଅଧିକ ଜଟିଳ ସମସ୍ୟାର ସାମନା କରିଥାନ୍ତି ।

ନୂତନ ଆଇନ ଅନୁଯାୟୀ, ଗ୍ରାମସଭା ଦ୍ୱାରା ବିବାଦ ସମାଧାନର ପରମ୍ପରାଗତ ପ୍ରଥାକୁ ସାମ୍ବିଧାନିକ ମାନ୍ୟତା ଦିଆଯିବା ଦ୍ୱାରା ବର୍ତ୍ତମାନ ଏହି ବିବାଦୀୟ ପରିସ୍ଥିତିର ପୁନରାବୃତ୍ତି ଘଟିବ ନାହିଁ ବୋଲି ଆଶା କରାଯାଏ । ସଂପୂର୍ଣ୍ଣ ପ୍ରଶାସନିକ ବ୍ୟବସ୍ଥା, ପୋଲିସ୍ ଏବଂ ଅଦାଲତକୁ ବାଦ୍ ଦେଇ ସମାଜର ପ୍ରତ୍ୟେକ ସ୍ତରରେ ଉପୁଜୁଥିବା ବାଦ-ବିବାଦକୁ ସମାଧାନ କରି, ସାମାଜିକ କାର୍ଯ୍ୟକଳାପ ସୁରୁଖୁରରେ ଚାଲିପାରିବ, ଏହା ନୂତନ ଆଇନର ମୂଳ ଲକ୍ଷ ଅଟେ । ଏହି ସ୍ୱୀକୃତି ଫଳରେ ଆଦିବାସୀ ସମାଜ ପୁର୍ଣ୍ଣରୂପେ ନିଜର ବ୍ୟବସ୍ଥା, ସମ୍ବଳର ବିନିଯୋଗ, ସୁରକ୍ଷା ଏବଂ ନିଜ ସ୍ଥିତିକୁ ଦୃଢ଼ ରଖିବାରେ ସମର୍ଥ ହେବ ।

## (୩)

## ଗ୍ରାମ ସଭାର ବିଶେଷ ଅଧିକାର

ଦେଖିବାକୁ ଗଲେ, ଗ୍ରାମସଭାକୁ ସାମ୍ବିଧାନିକ ସ୍ୱୀକୃତି ବା ମାନ୍ୟତା ମିଳିଯିବାପରେ ଅନ୍ୟ କୌଣସି ପଦକ୍ଷେପ ନେବା ଜରୁରୀ ନୁହେଁ । କିନ୍ତୁ ଏହି ସଂଶୋଧନର ପରିସର ଏତେ

ବ୍ୟାପକ ଯେ, ଏହାକୁ ଠିକ୍ ଭାବରେ ବୁଝିବା ଏବଂ କାର୍ଯ୍ୟ କ୍ଷେତ୍ରରେ ଲାଗୁ କରିବା ପାଇଁ ଖୁବ୍ ସମୟ ସାପେକ୍ଷ ହେବା ସଂଗେ ସଂଗେ ରାଜ୍ୟ ଓ ଆଞ୍ଚଳିକ ସ୍ତରରେ ବ୍ୟବହାରିକ କ୍ଷେତ୍ରରେ ଏହାର ପ୍ରକୃତ ପରିଭାଷାକୁ ନେଇ ମତଭେଦ ମଧ୍ୟ ସୃଷ୍ଟି ହୋଇପାରେ । ଏଣୁ ଆରମ୍ଭରୁ ହିଁ କୌଣସି ବିବାଦୀୟ ପରିସ୍ଥିତି ସୃଷ୍ଟି ନକରି, ସୁରୁଖୁରରେ ଯେପରି ଏହାକୁ କାର୍ଯ୍ୟକାରୀ କରାଯାଇପାରିବ ସେଥିନିମିତ୍ତ ଏହି ନୂତନ ଆଇନରେ ନିମ୍ନ ଲିଖିତ କେତୋଟି ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥାର ପ୍ରବର୍ତ୍ତନ କରାଯାଇଅଛି ।

ଅଧିକାର ସମ୍ବନ୍ଧରେ ମଧ୍ୟ ଏହି ଆଇନରେ ଦୁଇପ୍ରକାରର ବ୍ୟବସ୍ଥା କରାଯାଇଅଛି । ପ୍ରଥମତଃ କେତୋଟି ବିଷୟରେ ଏହି ଆଇନ ଅନୁଯାୟୀ ଗ୍ରାମସଭାକୁ ସିଧାସଳଖ ପୂର୍ଣ୍ଣ କ୍ଷମତା ଦିଆଯାଇଛି ଏବଂ ଦ୍ୱିତୀୟରେ ଅନ୍ୟ କେତୋଟି ବିଷୟକୁ ନେଇ ନୂତନ ଆଇନ ପ୍ରଣୟନ ପୂର୍ବକ, ସେଥିରେ ଥିବା କ୍ଷମତାକୁ ଗ୍ରାମସଭା ବା ପଞ୍ଚାୟତ ହାତରେ ଅର୍ପଣ କରିବା ପାଇଁ ମଧ୍ୟ ରାଜ୍ୟ ବିଧାନ ସଭାକୁ ନିର୍ଦ୍ଦେଶ ଦିଆଯାଇଅଛି ।

## (କ) ଗ୍ରାମସଭାକୁ ଦିଆଯାଇଥିବା ସଂପୂର୍ଣ୍ଣ କ୍ଷମତା

କେନ୍ଦ୍ରସରକାରଙ୍କ ନୂତନ ଆଇନ ଅନୁଯାୟୀ ଗ୍ରାମସଭାକୁ ୩ଟି ସିଧାସଳଖ କ୍ଷମତା ଦିଆଯାଇଅଛି । ଯଥା :

### ୧. ବିକାଶ ବା ଉନ୍ନୟନ ମୂଳକ କାର୍ଯ୍ୟ :

ଗ୍ରାମ ସ୍ତରରେ ଲାଗୁ କରାଯାଉଥିବା ସମସ୍ତ ସାମାଜିକ, ଅର୍ଥନୈତିକ ଯୋଜନା ବା କାର୍ଯ୍ୟକ୍ରମକୁ ଅନୁମୋଦନ କରିବା ଅଧିକାର ଗ୍ରାମସଭାର ରହିଛି । ପୁନରାୟ, ଗ୍ରାମସଭାର ବିନା ଅନୁମୋଦନରେ ଗ୍ରାମପଞ୍ଚାୟତ ସେଠାରେ କୌଣସି କାର୍ଯ୍ୟ ଆରମ୍ଭ କରିପାରିବ ନାହିଁ ଏବଂ ଏହିପରି ଭାବରେ ଦାରିଦ୍ର୍ୟ ଦୂରୀକରଣ ଓ ଅନ୍ୟାନ୍ୟ ବିକାଶ ସମ୍ବନ୍ଧୀୟ କାର୍ଯ୍ୟକ୍ରମରୁ ଗାଁ ପାଇଁ କେଉଁଟି ହିତକାରୀ ବା ଲାଭଦାୟକ ତାହା ଗ୍ରାମସଭା ସ୍ଥିର କରିବ ।

### ୨. ଖର୍ଚ୍ଚ ତଦାରଖ

ଗାଁରେ ପ୍ରତ୍ୟେକ ଯୋଜନାରେ ଖର୍ଚ୍ଚ କରାଯାଉଥିବା ଅର୍ଥ ଉପରେ ସଂପୂର୍ଣ୍ଣ ନଜର ରଖିବାର ଦାୟୀତ୍ୱ ଗ୍ରାମସଭାକୁ ଦିଆଯାଇଛି । ଏହି ଆଇନ୍ ଅନୁଯାୟୀ ଗାଁରେ ଖର୍ଚ୍ଚ କରାଯାଉଥିବା ଅର୍ଥର ଟିକିନିଖି ହିସାବ ଗ୍ରାମସଭାକୁ ଗ୍ରାମ ପଞ୍ଚାୟତ ଦେବାପାଇଁ ବାଧ୍ୟ ଏବଂ ଗ୍ରାମସଭାଠାରୁ ଅର୍ଥ ସଦୁପଯୋଗର ପ୍ରମାଣ ପତ୍ର ଆଣିବା ଆଇନତଃ ଅନିର୍ବାଯ୍ୟ ଅଟେ (ଧାରା ୪-ଚ) । ଏହାଦ୍ୱାରା ଆଗରୁ ଯେପରି କେନ୍ଦ୍ର ସାହାଯ୍ୟ ଅର୍ଥର ବାଟ ମାରଣା ହେଉଥିଲା, ତାହାକୁ ରୋକିବାରେ ଏହି ଆଇନ୍ ନିଶ୍ଚିତ ରୂପେ ସମର୍ଥ ହେବ । (କେନ୍ଦ୍ର ସରକାରଙ୍କ ବିଭିନ୍ନ ଯୋଜନାର ଅର୍ଥ ବାଟମାରଣା ହେଉଥିବା ପୂର୍ବତନ ପ୍ରଧାନମନ୍ତ୍ରୀ ଖୋଲା ଖୋଲି ଭାବେ ସ୍ୱୀକାର ମଧ୍ୟ କରିଅଛନ୍ତି) ।

## ୩. ଭୂ-ଅର୍ଜନ (Land Aquisition) ପୂର୍ବରୁ ପରାମର୍ଶ

ଭୂ-ଅର୍ଜନ ନିୟମାନୁଯାୟୀ, ଯେଉଁ ବ୍ୟକ୍ତିର ଜମି ସରକାର ନେବାପାଇଁ ଚାହାନ୍ତି, ତାଙ୍କୁ ସିଧା ସଳଖ ନୋଟିସ୍ ଜାରୀ କରି ଅଦାଲତ ଜରିଆରେ ଶୁଣାଣି କରନ୍ତି ଏବଂ ତା'ପରେ ଜମିର ମୂଲ୍ୟ ସ୍ଥିର କରାଯାଏ । ଏଥିରେ ଅନ୍ୟ କେହି ହସ୍ତକ୍ଷେପ କରିପାରିବେ ନାହିଁ । କୌଣସି ବ୍ୟକ୍ତି ଯଦି ଏହାର ବିରୋଧ କରନ୍ତି, ତେବେ ବଳପୂର୍ବକ ସରକାର ତାଙ୍କ ଜମି ଦଖଲ କରିବାର ଅଧିକାର ରହିଛି । ଏହି ବ୍ୟବସ୍ଥାରେ ସମାଜର ଅସ୍ତିତ୍ୱ ଓ ସମ୍ବଳ ଉପରେ ଏବଂ ସାମୁହିକ ଅଧିକାର ପ୍ରତି କୌଣସି ସମ୍ମାନ ପ୍ରଦର୍ଶନ କରାଯାଇ ନାହିଁ । ବ୍ୟକ୍ତି ବିଶେଷ ଏକାକୀ ହିଁ ଏହା ବିରୁଦ୍ଧରେ ଲଢ଼େଇ କରିବା ଛଡ଼ା ଉପାୟ ନାହିଁ । ଯଦି ଲୋକମାନେ ଏକାଠି ହୋଇ ଏକ ସମାଜ ବା ଗୋଷ୍ଠୀଭାବେ ଏହାର ବିରୋଧ କରିବା ପାଇଁ ବାହାରନ୍ତି, ଏହାକୁ ଶାନ୍ତି ଏବଂ ବ୍ୟବସ୍ଥାର (Law and Order Problem) ଖିଲାପ ବୋଲି ଆଖ୍ୟା ଦିଆଯାଏ ।

ନୂତନ ଆଇନ୍ ଅନୁଯାୟୀ ଭୂ-ଅର୍ଜନ ବା ଜମିଦଖଲ ପ୍ରକ୍ରିୟାରେ, ପୂର୍ବରୁ ଥିବା ଉପନିବେଶୀୟ ଚିନ୍ତାଧାରାକୁ ଦୂରକରି, ନୂତନ ଆଇନରେ ଭୂ-ଅର୍ଜନ ପ୍ରକ୍ରିୟାରେ ସମାଜକୁ ସାମିଲ କରାଯାଇଅଛି । ଏହା ଦ୍ୱାରା ଆଦିବାସୀ ଅଂଚଳରେ କୌଣସି ବିକାଶ ଯୋଜନା ଅନ୍ତର୍ଗତ ଭୂ-ଅର୍ଜନ ସମ୍ବନ୍ଧରେ ପ୍ରଥମେ ଗ୍ରାମସଭା ସହ ପରାମର୍ଶ କରିବା ଅନିବାର୍ଯ୍ୟ । ଏହିପରି କୌଣସି ଯୋଜନାରେ ପ୍ରଭାବିତ ହେଉଥିବା ବ୍ୟକ୍ତିମାନଙ୍କର ଥଇଥାନ ଓ ପୁନର୍ବସତି ବ୍ୟବସ୍ଥା କରିବା ପୂର୍ବରୁ ପ୍ରଥମେ ଗ୍ରାମସଭାର ପରାମର୍ଶ ନେବା ଜରୁରୀ ଅଟେ । (ଧାରା ୪-ଝ) ।

ଏଠାରେ ଗୋଟାଏ କଥା ସ୍ପଷ୍ଟ କରିଦିଆଯାଇଛି ଯେ, ନୂତନ ଆଇନ୍‌ରେ ଗ୍ରାମ ସଭା ସହ ପରାମର୍ଶ ଜରୁରୀ ବୋଲି କୁହାଯାଇଛି । ଏହାର ଅର୍ଥ ଏହାମଧ୍ୟ ହୋଇପାରେ ଯେ ଗ୍ରାମ ସଭାର ସମ୍ମତି ଜରୁରୀ ନୁହେଁ । ତଥାପି ଏସବୁ ମାମଲାରେ ହାଇକୋର୍ଟ ଏବଂ ସୁପ୍ରିମକୋର୍ଟ ଏହି ବ୍ୟବସ୍ଥା କରିଛନ୍ତି ଯେ ଯେଉଁ ପର୍ଯ୍ୟନ୍ତ କୌଣସି ଅସାଧାରଣ ପରିସ୍ଥିତି ସୃଷ୍ଟି ହୋଇନାହିଁ, 'ପରମର୍ଶ'ର ଅର୍ଥ ସମ୍ମତି ବୋଲି ବୁଝିବାକୁ ପଡ଼ିବ ।

## (ଖ) ବିଧାନ ସଭା ଦ୍ୱାରା ପରୋକ୍ଷ ଆଇନଗତ ଅଧିକାର

ଉପର ଲିଖିତ କଥାଗୁଡ଼ିକୁ ବାଦ୍ ଦେଲେ ଆହୁରି ଅନେକ ବିଷୟରେ ଆଇନ୍ ପ୍ରଣୟନ ପୂର୍ବକ ଗ୍ରାମସଭା ଏବଂ ପଞ୍ଚାୟତର ଅଧିକାର ପରିସର ଭୁକ୍ତ କରାଯିବା ପାଇଁ ବିଧାନସଭା ଗୁଡ଼ିକୁ ପରିବର୍ତ୍ତିତ କେନ୍ଦ୍ରିୟ ଆଇନ୍‌ରେ ସ୍ପଷ୍ଟ ନିର୍ଦ୍ଦେଶ ରହିଛି । ସେ ଗୁଡ଼ିଏ ହେଲା —

## ୧. ମଦ୍ୟପାନ

ମଦ୍ୟପାନ ଆଦିବାସୀ ସାମାଜିକ ଜୀବନ ଓ ବ୍ୟବସ୍ଥାର ଏକ ଅଭିନ୍ନ ଅଙ୍ଗ ଅଟେ । କିନ୍ତୁ ଏହାକୁ ମାଧ୍ୟମ କରି ଆଦିବାସୀ ମାନଙ୍କୁ ସଦା ସର୍ବଦା ଶୋଷଣ ଓ ଅତ୍ୟାଗ୍ରର ଶୀକାର କରାଯାଉଛି । କେତେକ ସ୍ଥଳରେ, ସାମାଜିକ ପରମ୍ପରାକୁ ଉପେକ୍ଷା କରି ସଂପୂର୍ଣ୍ଣ ମଦ ନିଷେଧ କରାଯାଉଛିତ ଅନ୍ୟ କେତେକ କ୍ଷେତ୍ରରେ ଆଦିବାସୀମାନଙ୍କ ପରମ୍ପରାଗତ ମଦ ତିଆରି ଏବଂ ଏଥିରେ ଉପଯୋଗ କରାଯାଉଥିବା ଜିନିଷ ଗୁଡ଼ିକୁ ନିଷେଧ କରି ସବୁ ଦିଗରୁ କ୍ଷତିକାରକ ସରକାରୀ ମଦର ଉପଯୋଗ କରିବା ପାଇଁ ବାଧ୍ୟ କରାଯାଉଛି । ଆଦିବାସୀଙ୍କ ମଦ୍ୟପାନର ଏହି ସାମାଜିକ ପରମ୍ପରାକୁ ନୂତନ ଆଇନ୍‌ରେ ଗ୍ରାମସଭାକୁ ପୁରା ଅଧିକାର ଦେବାପାଇଁ ବ୍ୟବସ୍ଥା କରାଯାଇଛି (ଧାରା ୪ଡ଼-୧) । ଗ୍ରାମସଭା ଗ୍ରୁହିଁଲେ ନିଜ ସମାଜ ମଧ୍ୟରେ ମଦ୍ୟପାନ ନିଷେଧ କରିପାରିବେ କିମ୍ବା ସଂପୂର୍ଣ୍ଣ ମଦ୍ୟପାନ ନିଷେଧ ନକରି ମାଦକ ଦ୍ରବ୍ୟର ବହୁଳ ବିକ୍ରୀକୁ ନିୟନ୍ତ୍ରଣ କରିପାରିବେ— ଅଥବା ଗାଁ ଲୋକମାନଙ୍କୁ ସଂଯମତା ରକ୍ଷାପୂର୍ବକ ମଦ୍ୟପାନ କରିବା ପାଇଁ ନିୟମ ପ୍ରଣୟନ କରିପାରିବେ । ଏହି ନିୟମ ଉଲ୍ଲଙ୍ଘନ କଲେ ଦଣ୍ଡ ଦେବାର ଅଧିକାର ମଧ୍ୟ ଗ୍ରାମ ସଭାର ରହିବ କାରଣ ଦଣ୍ଡ ବ୍ୟବସ୍ଥା ଆଦିବାସୀ ପରମ୍ପରାର ଏକ ପ୍ରଥା ଅଟେ ।

## ୨. ଆଦିବାସୀଙ୍କ ଜମିଭୂମିର ସୁରକ୍ଷା

ଆମଦେଶରେ ଅନେକ ପ୍ରକାରର ଆଇନ୍ କାନୁନ ବ୍ୟବସ୍ଥା ରହିଥିବା ସତ୍ତ୍ୱେ ଆଦିବାସୀମାନଙ୍କ ହାତରୁ ଧିରେ ଧିରେ ତାଙ୍କର ଜମି ସବୁ ଅଣ ଆଦିବାସୀମାନଙ୍କ ହାତକୁ ଗ୍ରୁଲିଯାଉଛି । ଯେଉଁ କେତେକ ସ୍ଥଳରେ ଆଇନ୍, ଅଦାଲତ ସେମାନଙ୍କ ହାତରୁ ଗ୍ରୁଲିଯାଉଥିବା ଜମିକୁ ଫେରାଇବା ବ୍ୟବସ୍ଥା କରୁଛି, ଧନୀ ଓ ଖଳ ପ୍ରକୃତିର ଲୋକମାନେ କୌଣସି ମତେ ବିଭିନ୍ନ ଉପାୟ ଅବଲମ୍ବନ କରି, ସରକାରୀ ବ୍ୟବସ୍ଥାର ସାହାଯ୍ୟ ନେଇ ସେସବୁକୁ କବ୍‌ଜା କରି ନେଉଛନ୍ତି ।

ନୂଆ ଆଇନରେ ଏ ସମ୍ବନ୍ଧରେ ସ୍ପଷ୍ଟ କରିଦିଆ ଯାଇଛି ଯେ ଆଦିବାସୀମାନଙ୍କ ଭୂ-ସମ୍ପତ୍ତି ବା ଜମିଭୂମିର ରକ୍ଷା ବର୍ତ୍ତମାନ୍ ଗ୍ରାମ ସଭାର ଦାୟିତ୍ୱ ଅଟେ । ଯଦି କୌଣସି ଗାଁର ଆଦିବାସୀର ଜମିକୁ ଅସତ୍ ଉପାୟରେ କେହି ଅଧିକାର କରି ନେଇଥାଏ ତେବେ ତାହାକୁ ପୁଣି ଫେରାଇ ଦେବାର ଅଧିକାର ଗ୍ରାମସଭାର ରହିଛି (ଧାରା ୪ ଡ଼- ୩ । ସାଧାରଣ ଆଦିବାସୀଙ୍କ ନିତିଦିନିଆ ଜୀବନ ସହ ସଂଶ୍ଲିଷ୍ଟ ଏହି ସମସ୍ୟା ପାଇଁ ଗାଁ ବାହାରକୁ ଯାଇ ଆଉ ତହସିଲ୍, ପୋଲିସ୍ କିମ୍ବା ଅଦାଲତର ଆଶ୍ରୟ ନେବାପାଇଁ ପଡ଼ିବ ନାହିଁ । ଗାଁର ଜମିବାଡ଼ିର ସମସ୍ତ ବିବାଦ ଗ୍ରାମସଭାଦ୍ୱାରା ଗାଁରେ ହିଁ ସମାଧାନ ହେବ ।

## ୩. ଲଘୁ ବନଜାତ ଦ୍ରବ୍ୟର ମାଲିକାନା :

ନୂତନ କେନ୍ଦ୍ରୀୟ ଆଇନ୍‌ରେ ଲଘୁ ବନଜାତ ଦ୍ରବ୍ୟର ମାଲିକାନା ଗ୍ରାମ ସଭାକୁ ଦିଆଯିବାର ବ୍ୟବସ୍ଥା ରହିଛି । ଏ ସଂପର୍କରେ ଯେପରି କୌଣସି ବିବାଦ କିମ୍ବା ମତଭେଦ ନ ଉପୁଜିବ ସେଥିପାଇଁ ପରମ୍ପରାଗତ ବ୍ୟବସ୍ଥାକୁ ସ୍ୱୀକୃତି ମିଳିବା ଭଳି ଅନ୍ୟାନ୍ୟ ଜିନିଷସହ ଆଦିବାସୀମାନଙ୍କୁ କନ୍ଦ, ଫଳମୂଳ ଓ ଅନ୍ୟାନ୍ୟ ଦରକାରୀ ଦ୍ରବ୍ୟ ସଂଗ୍ରହ କରିବାର ଅଧିକାର ଅନ୍ତର୍ଭୁକ୍ତ କରାଯାଇଛି । ଏହି ଆଇନ୍ ଫଳରେ ଆଦିବାସୀ ସମାଜ ବା ଗ୍ରାମସଭା ଉପରେ ସମସ୍ତ ଲଘୁ ବନଜାତ ଦ୍ରବ୍ୟର ସଂପୂର୍ଣ୍ଣ ମାଲିକାନା ନ୍ୟସ୍ତ ରହିବ । ଫଳରେ ପୂର୍ବ ଭଳି ସରକାର, ସାହୁକାର ବା ଅନ୍ୟକେହି ଲଘୁବନଜାତ ଦ୍ରବ୍ୟର ବଜାର ଦର ନିୟନ୍ତ୍ରଣ ଓ ମହଜୁଦ ରଖିବା ଇତ୍ୟାଦି ନକରି ନିର୍ଦ୍ଦିଷ୍ଟ ଅଂଚଳର ସମାଜ ବା ଗ୍ରାମସଭାର ଏହି ସମସ୍ତ ଅଧିକାର ରହିବ ।

ଫଳ ସ୍ୱରୂପ, ଲଘୁ ବନଜାତ ଦ୍ରବ୍ୟର ମାଲିକାନା ଗ୍ରାମସଭା ହାତକୁ ଆସିବା ପରେ, ବନଜାତ ଦ୍ରବ୍ୟ ମିଳୁଥିବା ସମୁଦାୟ ଜଂଗଲ ଅଞ୍ଚଳର ସୁରକ୍ଷା, ଗ୍ରାମସଭା ଅଧିକାର ସ୍ୱତ୍ତ୍ୱ ପରିସରଭୁକ୍ତ ହୋଇଯିବ ଏବଂ ତା'ପରେ ଜଙ୍ଗଲ ଉପରେ ଅଧିକାର ସାବ୍ୟସ୍ତ କରି ଆସୁଥିବା ସରକାର କିମ୍ବା ସଂପୃକ୍ତ ବିଭାଗ ଗ୍ରାମ ସଭାର ପରାମର୍ଶ ଓ ସମ୍ମତି ବିନା କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଅଧିକାର ଆଉ ରହିବ ନାହିଁ ।

## ୪. ଜଳ ସଂପଦ ଉପରେ ଅଧିକାର :

ଦେଶର ପ୍ରାୟ ସମସ୍ତ ବଡ଼ ବଡ଼ ନଦୀ ସମୁହର ଉଦଗମ ଓ ପ୍ରସାର ଆଦିବାସୀ ଅଞ୍ଚଳର ପାହାଡ଼ ଜଙ୍ଗଲରୁ ହିଁ ହୋଇଥାଏ । କିନ୍ତୁ ଏହାର ସଦୁପଯୋଗ ସଂପର୍କରେ ଆଦିବାସୀମାନଙ୍କର କୌଣସି ଆଇନଗତ ଅଧିକାର ବର୍ତ୍ତମାନ ପର୍ଯ୍ୟନ୍ତ ନାହିଁ । ଫଳରେ ବଡ଼ ବଡ଼ ଯୋଜନା କାର୍ଯ୍ୟକାରୀ ହେବା ବେଳେ ଆଦିବାସୀଙ୍କ ସ୍ୱାର୍ଥତ ଦୂରର କଥା ବରଂ ବାସଚ୍ୟୁତ ହେବାର ବିଭୀଷିକା ଭିତରେ ହିଁ ସେମାନେ କାଳାତିପାତ କରିଥାଆନ୍ତି ।

ଭୂ ଅର୍ଜନ ବା ଜମି ଦଖଲ ସମ୍ବନ୍ଧରେ ପରାମର୍ଶ ବ୍ୟବସ୍ଥା କାର୍ଯ୍ୟକାରୀ ହେବାପରେ ଏହି ପରିସ୍ଥିତି କିଛିଟା ବଦଳିବ କିନ୍ତୁ ମହତ୍ତ୍ୱପୂର୍ଣ୍ଣ ସମ୍ବଳର ବିନିଯୋଗ ସେଠାରେ ଅଧାପନ୍ତରିଆ ହୋଇ ରହିଯିବ । ପୂର୍ବରୁ ଏହା ଉଲ୍ଲେଖ କରାଯାଇଛି ଯେ, ସାମୁହିକ ସଂପଦରେ ଜଳ ସଂପଦ ମଧ୍ୟ ଏକ ଅଭିନ୍ନ ଅଙ୍ଗ ଅଟେ । କିନ୍ତୁ ତା' ଉପରେ ଅଧିକାରର ବ୍ୟବହାରିକ ରୂପ କ'ଣ ହେବ ସେ ସଂପର୍କରେ ଧୀରେ ଧୀରେ ସ୍ପଷ୍ଟ ରୂପରେଖ ପ୍ରକାଶ ପାଇବ ।

ନୂତନ ଆଇନ ଅନୁସାରେ ଜଳ ସମ୍ବଳର ସଠିକ୍ ଉପଯୋଗୀତା ସଂପର୍କୀୟ ଅଧିକାରକୁ ପଞ୍ଚାୟତ ଉପରେ ନ୍ୟସ୍ତ କରାଯାଇଛି (ଧାରା ୪-ଡ) ଏବଂ ଏହାଦ୍ୱାରା ପଞ୍ଚାୟତ ଏହାକୁ ଗ୍ରାମ ସମାଜ ବା ଗ୍ରାମ ସଭା ମାଧ୍ୟମରେ ହିଁ କାର୍ଯ୍ୟକାରୀ କରିବ ।

## ୫. ଖଣିଜ ସଂପଦ :

ଖଣିଜ ସମ୍ପଦ ଉପରେ ବର୍ତ୍ତମାନ ପର୍ଯ୍ୟନ୍ତ ରାଜ୍ୟ ସରକାରଙ୍କର ଏକଗୁଟିଆ ଅଧିକାର ରହିଛି ଏବଂ ଗାଁରେ ଏବେ ମଧ୍ୟ, ମାଟି, ଗେଟି, ବାଲି କିମ୍ବା ଜଙ୍ଗଲରୁ ଘରୋଇ କାର୍ଯ୍ୟ ନିମନ୍ତେ ପଥର ପ୍ରଭୃତି ଆଣିବା ପୂର୍ବରୁ ପ୍ରଥମେ ସରକାରଙ୍କ ଅନୁମତି ନେବା ଜରୁରୀ ହେଉଅଛି । ଏହି ମାମଲାକୁ ନେଇ ବହୁ ସମୟରେ ବିବାଦୀୟ ପରିସ୍ଥିତି ସୃଷ୍ଟି ହେଉଛି ଏବଂ ଗାଁ ଲୋକେ ଖୁବ୍ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଅନ୍ୟ ପକ୍ଷରେ, କୋଇଲା, ଲୁହା, ବକ୍‌ସାଇଟ୍ ପ୍ରଭୃତି ମୁଖ୍ୟ ଖଣିଜ ଦ୍ରବ୍ୟର ଭଣ୍ଡାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ହିଁ ରହିଛି ଏବଂ ସେ ସବୁର ବିନିଯୋଗ ଓ ଉତ୍ତୋଳନ ପାଇଁ ବହୁ ସଂଖ୍ୟାରେ ଆଦିବାସୀମାନେ ବାସଚ୍ୟୁତ ହେଉଛନ୍ତି ।

ଏହା ଆଗରୁ ଆଲୋଚନା କରାଯାଇଛି ଯେ, ଖଣିଜ ସଂପଦ ସମ୍ବନ୍ଧୀୟ ପୂର୍ଣ୍ଣ ଅଧିକାର ଗ୍ରାମସଭାର ହିଁ ରହିଛି । କିନ୍ତୁ ଏହି ଦିଗ୍ବର ଧାରାକୁ ଯଦିଓ ପୂର୍ଣ୍ଣ ମାନ୍ୟତା ମିଳିନାହିଁ. ତଥାପି ବର୍ତ୍ତମାନ ପାଇଁ ନୂଆ ଆଇନରେ ଗେଟି, ପଥର, ବାଲି, ମାଟି, ଗ୍ରାନାଇଟ୍ ପ୍ରଭୃତି ସାଧାରଣ ବା ଲଘୁ ଖଣିଜ ଦ୍ରବ୍ୟ ଗୁଡ଼ିକୁ ଗ୍ରାମ ସମାଜ ବା ଗ୍ରାମ ସଭାର ନିୟନ୍ତ୍ରଣ ବ୍ୟବସ୍ଥା ଭିତରେ ସାମିଲ କରାଯାଇଛି । ସାଧାରଣ ଖଣିଜ ଦ୍ରବ୍ୟ ମାମଲାରେ ଖୋଳିବା ଏବଂ ପଟ୍ଟା ଦେବାପାଇଁ ପ୍ରଥମେ ଗ୍ରାମ ସଭାର ସୁପାରିଶ ଅନିବାର୍ଯ୍ୟ କରାଯାଇଛି ଏବଂ ଯଦି ଏହାର ବିନିଯୋଗ ପାଇଁ ନିଲାମ ଇତ୍ୟାଦି ଦେବା ଆବଶ୍ୟକ ମନେହୁଏ, ତେବେ ମଧ୍ୟ ପୂର୍ବରୁ ଗାଁ ସଭାର ସୁପାରିଶ ଅତ୍ୟନ୍ତ ଆବଶ୍ୟକ ଅଟେ । ସରକାର ଯଦିଓ ଖଣିଜ ସଂପଦ ଉପରେ ନିଜର ସଂପୂର୍ଣ୍ଣ ଅଧିକାର ରଖିଛନ୍ତି ତଥାପି ନୂତନ ଆଇନରେ ଏ ବ୍ୟବସ୍ଥା ଏକ ଦୃଢ଼ ଓ ସୁନ୍ଦର ପଦକ୍ଷେପ ଅଟେ ।

## ୬. ଋଣ ବ୍ୟବସ୍ଥା :

ଆଦିବାସୀ ସମାଜ ସମ୍ମୁଖରେ ସବୁଠାରୁ ବଡ଼ ସମସ୍ୟା ହେଉଛି ଋଣ ବା କରଜ ବ୍ୟବସ୍ଥା ଯେଉଁଥି ପାଇଁ ଅନେକ ସମୟରେ ସେମାନଙ୍କ ସର୍ବସ୍ୱ ହରାଇବାକୁ ପଡ଼ିଥାଏ । ସରକାରୀ ତଥା ସମବାୟ ଋଣ ମଧ୍ୟ ସେମାନଙ୍କୁ ଅଭିଶାପ ଭାବେ ସମସ୍ୟା ଘେରରେ ଛନ୍ଦି ଦେଇଥାଏ । ଗୃଷବାସର ଉନ୍ନତି ବଦଳରେ ଘରର କୋରଖି ବା ଜମିବିକ୍ରୀ ଏକ ସାଧାରଣ ଘଟଣା ହୋଇଥିବାରୁ ଟଙ୍କାର ଏହି ପାରମ୍ପରିକ ଋଣ ବିନିମୟ ବ୍ୟବସ୍ଥା ସମ୍ମୁଖରେ ଆଦିବାସୀ ସଂପୂର୍ଣ୍ଣ ଅସହାୟ ହୋଇଯାଇଥାଏ । ନୂତନ ଆଇନରେ ଆଦିବାସୀମାନଙ୍କୁ ଦିଆଯାଉଥିବା ଋଣ ବ୍ୟବସ୍ଥା ଉପରେ ଗ୍ରାମସଭା ନିୟନ୍ତ୍ରଣ କରିବାର ଅଧିକାର ନ୍ୟସ୍ତ କରାଯାଇଛି । (ଧାରା ୪ଡ଼-୫) । ଏହି ଆଇନ୍ ଲାଗୁ ହେବାପରେ, ଆଦିବାସୀମାନଙ୍କୁ ଦିଆଯାଉଥିବା ସମସ୍ତ ଋଣ ସରକାରୀ ସମବାୟ ଓ ସାହୁକାର ଋଣ ପ୍ରକ୍ରିୟାରେ ଗ୍ରାମସଭା ମଧ୍ୟ ସାମିଲ୍

ହେବ ଏବଂ ସାଧାରଣ ଆଦିବାସୀ ନିଜ ଋଣ ସମ୍ବନ୍ଧୀୟ କୌଣସି ଅଭିଯୋଗ ବା ଗୁହାରୀ ନିମନ୍ତେ ତାକୁ ବାହାରକୁ ଯିବାକୁ ପଡ଼ିବ ନାହିଁ । ଆହୁରି ମଧ୍ୟ, ତା'ଉପରେ କୌଣସି ନୋଟିସ୍ ଜାରୀ କରାଗଲେ ତାକୁ ସଂପୃକ୍ତ ଅଫିସ୍‌କୁ ଯାଇ ଗୋଡ଼ଭାଙ୍ଗି ଠିଆ ହେବା ପାଇଁ ପଡ଼ିବ ନାହିଁ । ସେ ଗ୍ରାମ ସଭାରେ ନିଜର ଗୁହାରୀ ଜଣାଇବା ପରେ ଗ୍ରାମ ସଭା ତାଙ୍କ ତରଫରୁ ସଂପୃକ୍ତ ସାହୁକାର, ଅଫିସ କିମ୍ବା ସମବାୟ ସମିତି ସହ ବିଗ୍ରହ ବିମର୍ଶ କରିବା ପାଇଁ ସମର୍ଥ ହେବ ।

## ୭. ହାଟ/ବଜାର ସମ୍ବନ୍ଧୀୟ ନୀତି :

ଆଦିବାସୀ ଅଂଚଳରେ ହାଟ ବଜାରର ଏକ ବିଶେଷ ମହତ୍ତ୍ୱ ରହିଛି । ବାହ୍ୟ ଅର୍ଥ ବ୍ୟବସ୍ଥା ଏବଂ ଆଦିବାସୀଙ୍କ ମଧ୍ୟରେ ଏହା ସଂପର୍କର କେନ୍ଦ୍ରବିନ୍ଦୁ ଅଟେ । ଏହି କାରଣରୁ ଏହା ଆଦିବାସୀମାନଙ୍କ ଶୋଷଣ ଓ ଉତ୍ପୀଡ଼ନର ମୁଖ୍ୟ ସ୍ଥଳ ହୋଇଯାଇଛି । ସାଧାରଣ ଆଦିବାସୀ ପାଇଁ ସ୍ଥାନୀୟ ହାଟ/ବଜାର ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ନ ଥିବାରୁ ପ୍ରତ୍ୟେକ କାର୍ଯ୍ୟ ପାଇଁ ବାଧ୍ୟ ହୋଇ ସେ ତାହା ଉପରେ ସଂପୂର୍ଣ୍ଣ ନିର୍ଭର କରିଥାଏ । ସରଳ ନିରୀହ ଆଦିବାସୀଙ୍କର ଏହି ସୁଯୋଗ ନେଇ ସେମାନଙ୍କୁ ଶୋଷଣ କରି ଯଥେଷ୍ଟ ଲାଭ ଉଠାଯାଇଥାଏ ।

ହାଟ/ବଜାର, ଆଦିବାସୀ ସାମାଜିକ ବ୍ୟବସ୍ଥାର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ତେଣୁ ସେମାନଙ୍କୁ ଶୋଷଣରୁ ମୁକ୍ତିଦେବା ଏବଂ ବିକାଶରେ ଭାଗୀଦାର ହେବା ପାଇଁ ସେମାନଙ୍କ ହାଟ ବଜାର କାରବାରରେ ନିୟନ୍ତ୍ରଣ ଅତି ଆବଶ୍ୟକ ଓ ଜରୁରୀ ଅଟେ । ଏହି ଅନିବାର୍ଯ୍ୟତାକୁ ଆଖି ଆଗରେ ରଖି ନୂଆ କେନ୍ଦ୍ରୀୟ ନୀତି ଅନୁଯାୟୀ ହାଟ/ବଜାରକୁ ଗ୍ରାମ ସଭାର ନିୟନ୍ତ୍ରଣରେ ଆଣିବା ପାଇଁ ବ୍ୟବସ୍ଥା କରାଯାଇଛି (ଧାରା ୪ ଡ଼-୪) ।

## ୮. ସଂସ୍ଥା ଏବଂ କର୍ମ କର୍ତ୍ତାଙ୍କ ଉପରେ ନିୟନ୍ତ୍ରଣ :

ଇଂରେଜ ଶାସନ କାଳରୁ ଚଳି ଆସୁଥିବା ବିଭିନ୍ନ ବିଭାଗର ପ୍ରଶାସନିକ ପଦାଧିକାରୀମାନଙ୍କର ସାଧାରଣ ଲୋକମାନଙ୍କ ପ୍ରତି ରୁକ୍ଷ ଓ କଠୋର ଭାବର (ମାଲିକ-ଗ୍ରକର ଭଳି ବ୍ୟବହାର ଦେଖାଇବା) ପରିବର୍ତ୍ତନ ସଂପର୍କରେ ନୂତନ କେନ୍ଦ୍ରୀୟ ଆଇନରେ ଦର୍ଶାଯାଇଛି । ଏହି ନୂତନ ନୀତି ଅନୁଯାୟୀ ଆର୍ଥିକ ଓ ସାମାଜିକ ବିକାଶ ସହ ଜଡ଼ିତ ସମସ୍ତ ସରକାରୀ ଏବଂ ବେସରକାରୀ ଅନୁଷ୍ଠାନ ବା ସଂସ୍ଥା ଏବଂ କର୍ମକର୍ତ୍ତାଙ୍କ ଉପରେ ଗ୍ରାମ ସଭାର ନିୟନ୍ତ୍ରଣ ରହିବ (ଧାରା ୪ ଡ଼-୬) । ଏଥିରେ ସ୍କୁଲ, ଡ଼ାକ୍ତରଖାନା (ସ୍ୱାସ୍ଥ୍ୟସେବା), ସମସ୍ତ ପ୍ରକାର ସମବାୟ ସମିତି ପ୍ରଭୃତି ସମାଜ କଲ୍ୟାଣ ଅନୁଷ୍ଠାନ ସମୂହ ଅନ୍ତର୍ଭୁକ୍ତ । ଏହାଦ୍ୱାରା ବିଭିନ୍ନ ଅନୁଷ୍ଠାନରେ ହେଉଥିବା ବ୍ୟାପକ ହେରଫେର ଯଥା : ଶିକ୍ଷା ଏବଂ ସ୍ୱାସ୍ଥ୍ୟ ସେବା ଇତ୍ୟାଦିରେ ପୂର୍ବପରି ଅବ୍ୟବସ୍ଥା ହୋଇ ପାରିବ ନାହିଁ । କର୍ମକର୍ତ୍ତାମାନଙ୍କର

ମନମୁତାବକ ଉପସ୍ଥିତି ଓ ଅନୁପସ୍ଥିତି ଔଷଧ ପତ୍ରର ଯଥେଚ୍ଛା ସ୍ୱେରା କାରବାର ମଧ୍ୟ ହେବ ନାହିଁ ଯେହେତୁ ସମସ୍ତଙ୍କୁ ବର୍ତ୍ତମାନ ଗ୍ରାମ ସଭାର ନିର୍ଦ୍ଦେଶ ମାନି କାର୍ଯ୍ୟ କରିବା ପାଇଁ ପଡ଼ିବ ।

## ୯. ଆର୍ଥିକ ସମ୍ବଳ :

ବିଭିନ୍ନ ଯୋଜନାର ଅସଙ୍ଗତ ଓ ଅଦରକାରୀ ଖର୍ଚ୍ଚ ବନ୍ଦକରି ଗାଁର ପ୍ରକୃତ ଉନ୍ନତି ନିମନ୍ତେ, ସ୍ଥାନୀୟ ଯୋଜନାରେ ଖର୍ଚ୍ଚ ହେଉଥିବା ଧନରାଶୀ ଉପରେ ଗ୍ରାମ ସମାଜର /ଗ୍ରାମ ସଭାର ପୂର୍ଣ୍ଣ ନିୟନ୍ତ୍ରଣ ରହିବା ପାଇଁ ନୂତନ ନୀତିରେ ଉଲ୍ଲେଖ କରାଯାଇଛି । ଫଳରେ ସରକାରଙ୍କର ସମସ୍ତ କାର୍ଯ୍ୟପାଇଁ ପ୍ରଥମେ ଆର୍ଥିକ ସମ୍ବଳର ଆୟୋଜନ ଏବଂ ପରେ ତାହାକୁ ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ବିଭିନ୍ନ ବିଭାଗ ମଧ୍ୟରେ ଆବଣ୍ଟନ ପ୍ରକ୍ରିୟା ଇତ୍ୟାଦିକୁ ନେଇ ହେଉଥିବା ବ୍ୟାପକ ବାଟମାରଣା ଓ ଖର୍ଚ୍ଚକାଟ ଇତ୍ୟାଦି ଘଟଣାର ପୁନରାବୃତ୍ତି ହେବ ନାହିଁ ।ତେଣୁ ପ୍ରଥମରେ ଯୋଜନା ବାବଦକୁ ଆସୁଥିବା ଅର୍ଥର ସଦୁପଯୋଗ ହୋଇ ପାରିବ ଓ ଦ୍ୱିତୀୟରେ ବିଭିନ୍ନ ଉନ୍ନତି ମୂଳକ ଯୋଜନା/କାର୍ଯ୍ୟର ସୁଫଳ ଲୋକଙ୍କୁ ମିଳିପାରିବ ।

# ୪

# ଆଦିବାସୀ ସମାଜର ସଂରକ୍ଷଣ ଓ ଆତ୍ମରକ୍ଷା :

ଆଦିବାସୀ ସମାଜର ସୁରକ୍ଷା ବା ସଂରକ୍ଷଣ ନିମନ୍ତେ ସଂବିଧାନରେ ରାଜ୍ୟ ଗୁଡ଼ିକୁ ବିଶେଷ ଦାୟିତ୍ୱ ଦିଆଯାଇଛି ଏବଂ ଏହି ଦାୟୀତ୍ୱ ଠିକ୍ ଭାବେ ପାଳନ କରିବା ପାଇଁ ମଧ୍ୟ ସଂବିଧାନରେ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ରଖାଯାଇଛି । ଏଥି ସଂଗେ ସଂଗେ କେନ୍ଦ୍ର ଓ ରାଜ୍ୟ ସରକାର ଗୁଡ଼ିକରେ ମଧ୍ୟ ବିଶେଷ ବ୍ୟବସ୍ଥାର ଉଲ୍ଲେଖ ରହିଛି ।ଏଥିରେ, ଆଇନ ପ୍ରଣୟନ, ସ୍ୱତନ୍ତ୍ର ବିଭାଗ ଗଠନ ଏବଂ କର୍ମଚାରୀ ନିଯୁକ୍ତି ଇତ୍ୟାଦି ଅନ୍ତର୍ଭୁକ୍ତ । ଏହି ବ୍ୟବସ୍ଥାମାନଙ୍କ ଦ୍ୱାରା ଏଯାଏଁ କୌଣସି ସୁଫଳ ତ ମିଳିନାହିଁ ବରଂ ଆଦିବାସୀ ସମାଜ ନିଜ ପରିବେଶ ଓ ପ୍ରାକୃତିକ ସମ୍ବଳ ଉପରୁ ତା'ର ଅଧିକାର ହରାଇଛି ଏବଂ ଏହା ସହିତ ବିଭିନ୍ନ ସମୟରେ ବାହ୍ୟ ଶକ୍ତିର ପ୍ରବେଶ ଓ ପ୍ରଭାବ ଯୋଗୁଁ ଆଦିବାସୀ ସମାଜର ମୌଳିକ ପରଂପରା ଦୁର୍ବଳ ହେବା ସଂଗେ ସଂଗେ କେତେକ ସ୍ଥଳରେ ଏହା ବିଲୁପ୍ତ ପ୍ରାୟ ଅବସ୍ଥାରେ ପହଞ୍ଚିଲାଣି ।

ଆମ ପ୍ରଚଳିତ ସାଂବିଧାନିକ ଏବଂ ପ୍ରଶାସନିକ ବ୍ୟବସ୍ଥାର ସବୁଠାରୁ ଦୁଃଖ ଦାୟକ ପରିଣାମ ହେଉଛି ଆଦିବାସୀ ସମାଜକୁ ଦୁର୍ବଳ ଓ ଅସହାୟ ବୋଲି ବିବେଚନା କରିବା ଓ

ଏଥିନେଇ ସେମାନଙ୍କ ପ୍ରତି ସାଧାରଣତଃ ଦୟା, ଅନୁକଂପା ଓ ଅନୁଗ୍ରହ ପ୍ରଦର୍ଶନ କରିବା । କେବଳ ଏତିକି ନୁହେଁ, ଆଦିବାସୀ ସମାଜକୁ ହୀନ ଚକ୍ଷୁରେ ଦେଖିବା, ଏପରିକି ସର୍ବୋଚ୍ଚ ନ୍ୟାୟାଳୟରେ କେତେକ ରାୟରେ ସେମାନେ ସଭ୍ୟ ସମାଜ ଠାରୁ ବହୁ ଦୂରରେ ଥିବା ଇତ୍ୟାଦି ଉଲ୍ଲେଖ କରିବା ଆଜି ଆଦିବାସୀ ସମାଜ ଓ ପରଂପରାର ସ୍ଥିତି ସଂପର୍କରେ ଅନ୍ୟମାନଙ୍କର ଜ୍ଞାନକୁ ନେଇ ଅନେକ ପ୍ରଶ୍ନବାଚୀ ସୃଷ୍ଟିକରେ ।

ଏକ ସ୍ୱାଭିମାନୀ, ଆତ୍ମନିର୍ଭରଶୀଳ ଓ ସ୍ୱୟଂ ସଂପୂର୍ଣ୍ଣ ଆଦିବାସୀ ସମାଜକୁ ସଭ୍ୟ ସମାଜର ଏହି ଆକ୍ଷେପ ପ୍ରଥମେ ନିନ୍ଦନୀୟ ଓ ପରେ ଭ୍ରମାତ୍ମକ ଅଟେ । ବିଭିନ୍ନ ପରିସ୍ଥିତିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଭିନ୍ନ ଭିନ୍ନ ବ୍ୟବସ୍ଥାର (ହାଟ/ବଜାର, ଆଇନ କାନୁନ, ଶାସନ-ଶୃଙ୍ଖଳାର) ଜଟିଳତା ଭିତରେ ସାଧାରଣ ଆଦିବାସୀଟିଏ ଛନ୍ଦି ହୋଇଯାଏ । ବିପରୀତ ପରିସ୍ଥିତିକୁ ସାମନା କରି ନ ପାରି ସେ ହାର ମାନେ ଓ ପରେ ଶୋଷଣ ଓ ଅତ୍ୟାଗ୍ୱରର ଶୀକାର ବନିଯାଏ ।

ଆଦିବାସୀ ସମାଜର ଅସ୍ତିତ୍ୱ ଓ ସ୍ଥିତିକୁ ନୂଆ ଆଇନଗତ ସ୍ୱୀକୃତି ମିଳିବା ପରେ ଏକ ବିଶେଷ ପରିବର୍ତ୍ତନ ଘଟିବ ବୋଲି ଅନୁମାନ୍ କରାଯାଏ । ନୂଆ ଆଇନର ଏହି ବଳିଷ୍ଠ ପଦକ୍ଷେପରେ ଆଦିବାସୀ ସମାଜ ବା ଗ୍ରାମସଭାକୁ ସମସ୍ତ ମର୍ଯ୍ୟାଦା ଓ ମହତ୍ତ୍ୱପୂର୍ଣ୍ଣ ମାମଲା ଗୁଡ଼ିକ ସମ୍ବନ୍ଧରେ ନିଜର ସୁରକ୍ଷାର ଦାୟିତ୍ୱ ନ୍ୟସ୍ତ କରାଯାଇଛି । ଫଳରେ ବାହ୍ୟ ସୁରକ୍ଷା ଶକ୍ତି ଉପରେ ସେମାନେ ନିର୍ଭରଶୀଳ ନ ହୋଇ ନିଜର ସୁରକ୍ଷା ସ୍ୱୟଂ କରିବା ନିମନ୍ତେ କାର୍ଯ୍ୟପନ୍ଥା ଗ୍ରହଣ କରିପାରିବେ । ସେମାନଙ୍କର ଅଧିକାରକୁ ସାବ୍ୟସ୍ତ କରାଯାଇ ପାରିଲେ ବାହାର ଶକ୍ତିର ଅନୁପ୍ରବେଶ ଓ ପ୍ରଭାବ ସଂପୂର୍ଣ୍ଣ ରୋକାଯାଇପାରିବ । ଏହି ନିର୍ଣ୍ଣାୟକ ସିଦ୍ଧାନ୍ତ ବିନା ଏକ ସ୍ୱାଭିମାନୀ ଆଦିବାସୀ ସ୍ୱୟଂ ଶାସନ ବ୍ୟବସ୍ଥାର କଳ୍ପନା ମଧ୍ୟ କରାଯାଇନପାରେ । ତେଣୁ ନୂତନ ଆଇନରେ ପାରଂପାରିକ ଆଦିବାସୀ ସମାଜର ସଂରକ୍ଷଣ ଓ ସୁରକ୍ଷା ନିମିତ୍ତ ଦିଆଯାଇଥିବା ଅଧିକାର ଓ ବ୍ୟବସ୍ଥା ଏକ ବଳିଷ୍ଠ ପଦକ୍ଷେପ ଅଟେ ।

## ୫

## କେନ୍ଦ୍ରୀକରଣ ବିରୁଦ୍ଧରେ

ଅନୁଭୂତିରୁ ଜଣାଯାଏ ଯେ, ବର୍ତ୍ତମାନ ପର୍ଯ୍ୟନ୍ତ କେବଳ ଲୋକଦେଖାଣିଆ ଭାବରେ ସରକାର ଅନେକ ଯୋଜନା କାର୍ଯ୍ୟକାରୀ କରାଇବା ଓ ପ୍ରତିଶ୍ରୁତି ଦେବା ସଂଗେ ସଂଗେ ଆବଶ୍ୟକ ସ୍ଥଳେ ଔପଗ୍ୱରିକତା ରୂପରେ ଲୋକଙ୍କୁ ଅଧିକାର ପ୍ରଦାନ କରିଥାଆନ୍ତି । କିନ୍ତୁ ପ୍ରକୃତ ଅର୍ଥରେ କ୍ଷମତା ବା ଅଧିକାର ସେମାନଙ୍କ ନିକଟରେ ପହଞ୍ଚିପାରେ ନାହିଁ । ଯଦିବା ପହଞ୍ଚେ ତେବେ ତାହା ସଂପୂର୍ଣ୍ଣ ପ୍ରଭାବହୀନ ବା ନିରର୍ଥକ ହୋଇପଡ଼ିଥାଏ । ଆଇନ ବା ଶାସନ ବ୍ୟବସ୍ଥାର ଏହି ରୂପାନ୍ତରୀକରଣ ରୀତି ସାଧାରଣତଃ ପରସ୍ପର ମଧ୍ୟରେ ବିବାଦୀୟ

ପରିସ୍ଥିତି ସୃଷ୍ଟି କରିଥାଏ ଏବଂ ଉପରୁ ତଳସ୍ତର ପର୍ଯ୍ୟନ୍ତ ସମସ୍ତ ବ୍ୟବସ୍ଥାକୁ ଆକ୍ଷେପ ବା ଦୋଷାରୋପ କରିବାର ଘନଘଟା ଭିତରେ ବିପର୍ଯ୍ୟସ୍ତ କରି ଦେଇଥାଏ ।

ଏହିପରି ବହୁସ୍ତରୀୟ ବ୍ୟବସ୍ଥାରେ ଗ୍ରାମସଭା ବା ଲୋକଙ୍କ ନିକଟକୁ ପଞ୍ଚାୟତ ମାଧ୍ୟମରେ ଏହି ଆଇନଗତ ଅଧିକାର ଅର୍ପଣ କରିବା ଦ୍ୱାରା ଏହା ଠିକ୍ ଭାବେ ସେଠାରେ ପହଞ୍ଚିବ ଏବଂ ତାର ଉପଯୋଗ କରାଯିବ ଏଥିରେ ଘୋର ସନ୍ଦେହ ରହିଛି । ପଞ୍ଚସ୍ତରୀୟ ବ୍ୟବସ୍ଥା ଯଥା : କେନ୍ଦ୍ରସରକାର, ରାଜ୍ୟ ସରକାର, ଜିଲ୍ଲା ପଞ୍ଚାୟତ, ଜନପଦ ପଞ୍ଚାୟତ ଓ ଗ୍ରାମପଞ୍ଚାୟତରେ ସମସ୍ତ ଅଧିକାରୀଙ୍କୁ ଆଇନଗତ ଅଧିକାର ପ୍ରଦାନ କରାଯାଇଥିଲେ ମଧ୍ୟ ବିଭିନ୍ନ ବ୍ୟବସ୍ଥାରେ ଯେ ଏହି ଆଇନର ସଦୁପଯୋଗ ହେବ ଏଥିନେଇ ମଧ୍ୟ ସନ୍ଦେହ ଉପୁଜିଛି । ଅଧିକାର ପାଇବା ପାଇଁ ଚ୍ୱଲିଥିବା ଟଣା ଓଟରାର ଏହି ଭିଡ଼ରେ ଆମ ସଂସଦ ସଦସ୍ୟ, ବିଧାୟକ, ଅନ୍ୟାନ୍ୟ ସମସ୍ତ ଜନ ପ୍ରତିନିଧିଙ୍କୁ ଯେହେତୁ ହିସାବରେ ରଖାଯାଇନାହିଁ, ସେମାନେ ସବୁସ୍ତରରେ, ସବୁ ପ୍ରକାରର ଅଧିକାରକୁ ଅନୌପଚ୍ୱରିକ୍ ରୂପରେ ଦଖଲ କରିବାର ଚେଷ୍ଟାରେ ଲାଗିଥାଆନ୍ତି ।

ନୂତନ ଆଇନର ବ୍ୟବସ୍ଥା ମୁତାବକ 'ଗାଁ ସମାଜ' ବା ଗ୍ରାମସଭା ବା ପଞ୍ଚାୟତକୁ ଅଧିକାର ନ ପହଞ୍ଚିବାର ବିପଦକୁ ଦେଖି ଏହି ଆଇନରେ କେତେକ କଟକଣା ପାଇଁ କରାଯାଇଥିବା ବ୍ୟବସ୍ଥା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଅଟେ । ଏହି କଟକଣା ଅନୁଯାୟୀ ରାଜ୍ୟ ବିଧାନସଭା ଗୁଡ଼ିକୁ ନିର୍ଦ୍ଦେଶ ଦିଆଯାଇଛି ଯେ, ସେମାନେ ଆଇନ ପ୍ରଣୟନ କଲାବେଳେ ଏପରି ବ୍ୟବସ୍ଥା କରିବେ ଯଦ୍ୱାରା କି ଉପର ସ୍ତରର ପଞ୍ଚାୟତ, ତଳସ୍ତରର କୌଣସି ପଞ୍ଚାୟତ ବା ଗ୍ରାମସଭାର ଶକ୍ତି ବା ଅଧିକାରକୁ ହ୍ରାସ ବା ଅକ୍ତିଆର କରି ପାରିବେ ନାହିଁ (ଧାରା ୪-ଡ଼) । ଅଧିକାର ଗୁଡ଼ିକର କେନ୍ଦ୍ରୀୟ କରଣ ବିରୁଦ୍ଧରେ ସଂବିଧାନରେ ଥିବା ଏହି ବ୍ୟବସ୍ଥାର ବିଶେଷ ମହତ୍ତ୍ୱ ରହିଛି । ଏଇ ଆଇନ ପ୍ରଣୟନ ହେବା ଫଳରେ ଲୋକଙ୍କ ମନରେ ବିଶ୍ୱାସ ଓ ଦୃଢ଼ତା ନିଶ୍ଚୟ ଆସିବ ଏବଂ ନିଜ ସ୍ତରରେ ଅନ୍ୟ କାହାରି ଅନ୍ୟାୟପୂର୍ଣ୍ଣ ହସ୍ତକ୍ଷେପକୁ ଦୃଢ଼ଭାବେ ରୋକି, ତା'ର ଠିକଣା ଜବାବ ଦେଇ କହିପାରିବେ ଯେ ଅନ୍ୟମାନେ ତାଙ୍କର ଠିକଣା ସ୍ଥାନର ସୀମା ରେଖା ଭିତରେ ରୁହନ୍ତୁ ଏବଂ ଆଇନ ଅନୁଯାୟୀ ତାଙ୍କୁ ଯେଉଁ ଅଧିକାର ମିଳିଛି, ସେହି ଅନୁସାରେ ତାଙ୍କୁ କାମ କରିବାର ସୁଯୋଗ ଦିଅନ୍ତୁ ।

## ୬

# ପଞ୍ଚାୟତର ବ୍ୟବସ୍ଥା

ନୂଆ ଆଇନ ବ୍ୟବସ୍ଥାରେ କେବଳ ଗ୍ରାମ ସଭାକୁ ହିଁ ପ୍ରାଧାନ୍ୟ ଦିଆଯାଇଛି । ଅନ୍ୟାନ୍ୟ ସ୍ତରର ପଞ୍ଚାୟତ ଗୁଡ଼ିକ ପାଇଁ ସଂବିଧାନ ଭାଗ - ୯ ର ବ୍ୟବସ୍ଥା ହିଁ ସାଧାରଣ ସ୍ତରରେ ଲାଗୁ କରାଯାଇଛି । ଏହିଭଳି ଅନୁସୂଚୀତ କ୍ଷେତ୍ରରେ ମଧ୍ୟ ତିନିସ୍ତରର ପଞ୍ଚାୟତ ରହିବ ଯଥା - ଗ୍ରାମପଞ୍ଚାୟତ, ମଧ୍ୟସ୍ତରୀୟ ପଞ୍ଚାୟତ (ଯାହାର ବିଭିନ୍ନ ରାଜ୍ୟରେ ଭିନ୍ନ

ଭିନ୍ନ ନାମ ରହିପାରିବ) ଓ ଜିଲ୍ଲା ପଞ୍ଚାୟତ । ଏହି ତିନି ସ୍ତରୀୟ ଆଦିବାସୀ କ୍ଷେତ୍ର ସମ୍ବନ୍ଧୀୟ ସ୍ଥିତି ନିମ୍ନରେ ଦିଆଗଲା ।

## ଗ୍ରାମ ପଞ୍ଚାୟତ :

ଯେହେତୁ ନୂତନ ଆଇନ ଅନୁଯାୟୀ ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ ଗ୍ରାମସଭା ରହିଛି ଏବଂ ଏହି ଗ୍ରାମସଭା ସର୍ବାଧିକାର ସଂପନ୍ନ ହୋଇଥିବାରୁ, ଗ୍ରାମ ପଞ୍ଚାୟତର ଏକ ସ୍ୱତନ୍ତ୍ର ସଂସ୍ଥା ରୂପରେ ମାନ୍ୟତା ଥିବା ସତ୍ତ୍ୱେ ମଧ୍ୟ ତାହା ପୂର୍ଣ୍ଣମାତ୍ରାରେ ଗ୍ରାମ ସଭାର ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିବ ଏବଂ ଗ୍ରାମସଭାକୁ ଉପେକ୍ଷାକରି ତାହାର କୌଣସି ସ୍ୱତନ୍ତ୍ର ଅଧିକାର ରହିବ ନାହିଁ ।

## ମଧ୍ୟବର୍ତ୍ତୀ ପଞ୍ଚାୟତ : (ଓଡ଼ିଶାର ପଞ୍ଚାୟତ ସମିତି)

ଏହି ଆଇନରେ ମଧ୍ୟବର୍ତ୍ତୀ ପଞ୍ଚାୟତ ସମ୍ବନ୍ଧରେ କୌଣସି କଥା କୁହାଯାଇ ନାହିଁ । ତେଣୁ ଏହାର ସ୍ଥିତି ସାଧାରଣ କ୍ଷେତ୍ରରେ ମଧ୍ୟବର୍ତ୍ତୀ ପଞ୍ଚାୟତ ଭଳି ରହିବ ।

## ଜିଲ୍ଲା ପଞ୍ଚାୟତ :

ପଞ୍ଚାୟତ ବ୍ୟବସ୍ଥାରେ ଜିଲ୍ଲା ପଞ୍ଚାୟତର ସ୍ଥାନ ସବୁଠାରୁ ଉଚ୍ଚରେ । ଜିଲ୍ଲା ସ୍ତରରେ ଏହି ବ୍ୟବସ୍ଥାକୁ ମଧ୍ୟ କେନ୍ଦ୍ର ତଥା ରାଜ୍ୟ ସ୍ତରୀୟ ଅଧିକାର ସଂପନ୍ନ ବ୍ୟବସ୍ଥାମାନ ରହିବା ପାଇଁ ଖୁବ୍ ଗୁରୁତ୍ୱ ଦିଆଯାଇଛି । ଉତ୍ତର-ପୂର୍ବାଞ୍ଚଳର ଷଷ୍ଠ ଅନୁସୂଚୀରେ ମଧ୍ୟ ଜିଲ୍ଲାସ୍ତରକୁ ହିଁ ସବୁଠାରୁ ମହତ୍ତ୍ୱ ଦିଆଯିବା ସଂଗେ ସଂଗେ ସଂବିଧାନରେ ଏହି ସ୍ତରର ସ୍ୱୟଂ ଶାସିତ ଜିଲ୍ଲା ପରିଷଦକୁ ବିଧେୟକ ଏବଂ ନ୍ୟାୟିକ ଅଧିକାର ମଧ୍ୟ ସଂବିଧାନରେ ଦିଆଯାଇଛି ।

ନୂଆ ଆଇନରେ ଜିଲ୍ଲା ପଞ୍ଚାୟତକୁ ହଠାତ୍ କୌଣସି ବିଶେଷ ଅଧିକାର ଦେବା କଥା କୁହାଯାଇନାହିଁ । ଏହାର ଅର୍ଥ ଏହି ଯେ, ଆଦିବାସୀ ବା ଅନୁସୂଚୀତ କ୍ଷେତ୍ରରେ ଏହି ପଞ୍ଚାୟତକୁ ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳର ପଞ୍ଚାୟତ ଭଳି ଗଠନ କରାଯାଇ ପାରିବ । କିନ୍ତୁ ନୂଆ ଆଇନରେ ଏଥି ସଂଗେ ସଂଗେ ଜିଲ୍ଲାସ୍ତରୀୟ ପଞ୍ଚାୟତ ସମ୍ବନ୍ଧରେ ଏକ ଦିଗ ନିର୍ଦ୍ଦେଶକ ସିଦ୍ଧାନ୍ତର ପ୍ରାବଧାନ ଯୋଗ କରାଯାଇଛି (ଧାରା ୪-ଣ) । ଏହି ପ୍ରାବଧାନରେ ସଂବିଧାନର ଷଷ୍ଠ ଅନୁସୂଚୀ ସମ୍ବନ୍ଧୀୟ ବ୍ୟବସ୍ଥାକୁ ଆଦର୍ଶ ରୂପେ ମାନି ନିଆଯାଇଛି । ରାଜ୍ୟ ବିଧାନ ସଭାର ଅଧିକାରରେ ଏହା ଆଶା ପ୍ରକାଶ କରାଯାଇଛି ଯେ ଷଷ୍ଠ ଅନୁସୁଚୀର ବ୍ୟବସ୍ଥା ଅନୁଯାୟୀ ଜିଲ୍ଲା ସ୍ତରରେ ପଞ୍ଚାୟତର ପ୍ରଶାସନିକ ବ୍ୟବସ୍ଥା ପ୍ରବର୍ତ୍ତନ କରିବାର ପ୍ରୟାସ କରାଯିବ ।

ଏହା ଉଲ୍ଲେଖନୀୟ ଯେ ଏହି ଆଇନର "ପ୍ରଶାସନିକ ବ୍ୟବସ୍ଥାର" ଅର୍ଥ ସାମାନ୍ୟ ପ୍ରଶାସନିକ ବ୍ୟବସ୍ଥା ନ ହୋଇ ସଂବିଧାନର ଅନୁଚ୍ଛେଦ ୨୪୪ରେ ପ୍ରୟୋଗ କରାଯାଇଥିବା ସେହିପଦର ଅର୍ଥ ଅନୁଯାୟୀ କରାଯାଇଛି । ଏହି ଅନୁଚ୍ଛେଦର ଷଷ୍ଠ ଅନୁସୂଚୀ ଅନ୍ତର୍ଗତ

ବିଧେୟକ ଓ ନ୍ୟାୟିକ ବ୍ୟବସ୍ଥାକୁ ମଧ୍ୟ ପ୍ରଶାସନିକ ବ୍ୟବସ୍ଥାର ଅଙ୍ଗରୂପେ ଧରାଯାଇଛି ।

## ପଞ୍ଚାୟତକୁ ବିଶେଷ ଅଧିକାର :

ଉପରିସ୍ଥ ଆଲୋଚନାରେ କୁହାଯାଇଛି ଯେ ନୂଆ ଆଇନ ବ୍ୟବସ୍ଥାରେ ଗ୍ରାମ ସଭା ବା ଗାଁ ସମାଜକୁ କେତେକ ମାମଲାରେ ସିଧା ସଳଖ ଏବଂ ଅନ୍ୟ କେତେକ ମାମଲାରେ ରାଜ୍ୟ ବିଧାନ ସଭା ମାଧ୍ୟମରେ ବ୍ୟାପକ ଅଧିକାର ପ୍ରଦାନ କରିବାର ବ୍ୟବସ୍ଥା ରହିଛି । ଏଥି ମଧ୍ୟରୁ କେତେକ ବିଷୟରେ କେବଳ ଗ୍ରାମ ସଭାକୁ ହିଁ ପୂର୍ଣ୍ଣରୂପରେ ଅଧିକାର ଦିଆଯାଇଛି । କିନ୍ତୁ ଅନ୍ୟକେତେକ ବିଷୟରେ ଗ୍ରାମସଭା ସହିତ ସମୁଚିତ ସ୍ତରରେ ପଞ୍ଚାୟତକୁ ମଧ୍ୟ ଯୋଗ କରାଯାଇଛି ।

ଏହିଭଳି ଆଦିବାସୀ କ୍ଷେତ୍ରରେ ବିଭିନ୍ନ ସ୍ତରର ପଞ୍ଚାୟତକୁ ସାଧାରଣ ଅଞ୍ଚଳ ତୁଳନାରେ ବେଶୀ ଅଧିକାର ଦିଆଯାଇଛି । ଏହି ଆଇନର ବିଭିନ୍ନ ଉପବନ୍ଧ ଗୁଡ଼ିକରେ ଗ୍ରାମସଭା ବା ପଞ୍ଚାୟତ କଥା ଉଲ୍ଲେଖ ହେବା ସତ୍ତ୍ୱେ ଗ୍ରାମସଭା ପାଇଁ ବ୍ୟାପକ ଅଧିକାରର ପୂର୍ଣ୍ଣ ଏବଂ ସକ୍ଷମ ବ୍ୟବସ୍ଥାକୁ ସ୍ଥାପନ କରିବା ପରେ କୌଣସି ବିଶେଷ ପରିସ୍ଥିତିରେ ଏହାର ଅଧିକାର ପରିସରକୁ କମ୍ କରାଯାଇ ପାରିବ ନାହିଁ ଏବଂ ପଞ୍ଚାୟତ ଗୁଡ଼ିକ ଚାହିଁଲେ ମଧ୍ୟ ଏହା ଉପରେ ଅଧିକାର ସାବ୍ୟସ୍ତ କରି ପାରିବେ ନାହିଁ । ଏହି ପରିପ୍ରେକ୍ଷୀରେ ସଂବିଧାନରେ ଉଲ୍ଲେଖ କରାଯାଇଛି ଯେ, ବିଧାନସଭା ଏଥିପାଇଁ ଗ୍ରାମସଭାକୁ ନିମ୍ନସ୍ତରରେ ରଖି, ପଞ୍ଚାୟତକୁ ଏହା ଉପରେ ଅଧିକାର ପ୍ରଦାନ କରି ପାରିବେ ନାହିଁ । ଏହିସବୁ ମାମଲା ଗୁଡ଼ିକରେ ପଞ୍ଚାୟତର କେବଳ ସହାୟକ ଓ ସମର୍ଥକର ଭୂମିକା ରହିବ । ଯଦି ଗ୍ରାମ ସଭାକୁ କୌଣସି ପ୍ରକାର ନିର୍ଦ୍ଦେଶ ଦିଆଯାଏ ତେବେ ତାହା ନୂଆ ଆଇନ ବ୍ୟବସ୍ଥାର ମୂଳଭାବନାର ବିରୁଦ୍ଧାଚରଣ କରିବ ତଥା ଅନୁଚ୍ଛେଦ-୪ ଏବଂ ଭାଗ ୯ ରେ ଯେପରିଭାବେ ଲୋକକେନ୍ଦ୍ରୀୟ ସ୍ୱୟଂ ଶାସନ ବ୍ୟବସ୍ଥାର କଳ୍ପନା କରାଯାଇଛି ସେହି ମୂଳଭାବନାକୁ ମଧ୍ୟ ଉଲଂଘନ କରିବ । ଏହି ଭଳି ନୂଆ ଆଇନରେ ପଞ୍ଚାୟତ ଗୁଡ଼ିକ ଲୋକାଭିମୁଖୀ ହେବ । ଯେଉଁ ପଞ୍ଚାୟତ ଲୋକଙ୍କ ନିକଟତର ହେବ ସେହି ପଞ୍ଚାୟତ ବେଶୀ ଅଧିକାର ପାଇବ । ଏହି ବ୍ୟବସ୍ଥା ପ୍ରଜାତନ୍ତ୍ରର ମୂଳ ଚେତନା ସହ ସମ୍ବନ୍ଧିତ ବିସ୍ତାର ଧାରା ବୋଲି ବିବେଚନା କରାଯାଇ ପାରିବ । ଏହି ନୂତନ ଆଇନ ଆଦିବାସୀ କ୍ଷେତ୍ରରେ ବ୍ୟାପକ ପ୍ରଜାତନ୍ତ୍ର ବ୍ୟବସ୍ଥା ସଂପର୍କରେ ଗୁରୁତ୍ୱ ପ୍ରଦାନ କରୁଥିବାରୁ ଏହା ଏକ ମହତ୍ତ୍ୱପୂର୍ଣ୍ଣ ଓ ଯୁଗାନ୍ତକାରୀ ପଦକ୍ଷେପ ଅଟେ ।

## ୭

## ସ୍ଥାନ ସଂରକ୍ଷଣ

ସଂବିଧାନର ନୂତନ ଆଇନରେ ଦିଆଯାଇଥିବା ସ୍ଥାନସଂରକ୍ଷଣ ବ୍ୟବସ୍ଥାକୁ ଆଦିବାସୀ କ୍ଷେତ୍ରପାଇଁ ମଧ୍ୟ ଲାଗୁ କରାଯାଇଛି । ଯେଉଁ ବର୍ଗପାଇଁ ସଂବିଧାନରେ କିମ୍ବା ରାଜ୍ୟ ଆଇନରେ

ସଂରକ୍ଷଣ ବ୍ୟବସ୍ଥା କରାଯାଇଛି, ସେମାନଙ୍କ ପାଇଁ ବିଭିନ୍ନ ସ୍ତରରେ ଯେପରି ପଞ୍ଚାୟତ ଏବଂ ପଞ୍ଚାୟତ ଅନ୍ତର୍ଗତ ସମସ୍ତ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଅନୁପାତରେ ସଂରକ୍ଷଣ କରାଯିବାର ପ୍ରଯତ୍ନ କରାଯାଇଛି ଏବଂ ଏଥିରେ ମହିଳାମାନଙ୍କ ପାଇଁ ମଧ୍ୟ ଏକ ତୃତୀୟାଂଶ ସଂରକ୍ଷଣ ବ୍ୟବସ୍ଥା ରଖାଯାଇଛି ।

ଏହି ସଂପର୍କରେ ଗୋଟିଏ କଥା ବିଶେଷ ରୂପେ ଉଲ୍ଲେଖନୀୟ ଅଟେ । ଆଦିବାସୀ ଅଂଚଳକୁ ସଂବିଧାନରେ ସ୍ୱତନ୍ତ୍ର ସ୍ଥାନ ଦେବାର ଏକମାତ୍ର କାରଣ ହେଉଛି ଏ ସବୁ କ୍ଷେତ୍ରରେ ସେମାନଙ୍କର ସଂଖ୍ୟା ବହୁଳତା । ଅନ୍ୟ ପକ୍ଷରେ କହିବାକୁ ଗଲେ, ଏସବୁ ସ୍ଥାନ ପରଂପରା ଗତ ଭାବେ ଆଦିବାସୀ ସମାଜର କ୍ଷେତ୍ରାଧିକାର ମଧ୍ୟରେ ରହି ଆସିଛି ଓ ଏସବୁ ଅଂଚଳ ସହ ଆଦିବାସୀ ସମାଜର ଏକ ଆତ୍ମିକ ଓ ଭାବନାତ୍ମକ ସ୍ତରରେ ଘନିଷ୍ଠ ସଂପର୍କ ରହି ଆସିଛି । ଏହାକୁ କେହି ଏଡ଼ାଇ ଦେଇ ପାରିବେ ନାହିଁ ।

ଏହି ପରିପ୍ରେକ୍ଷୀରେ ପ୍ରଥମତଃ ଆଦିବାସୀମାନଙ୍କୁ ନିଜର ସମ୍ବଳ ସମୁହର ବେଦଖଲ ହେବାର ଚକ୍ରାନ୍ତର ସମ୍ମୁଖୀନ ହେବାକୁ ପଡ଼େ ଏବଂ ସେମାନଙ୍କର ସଂଖ୍ୟା ଯେତେବେଳେ କମିଯାଏ ଠିକ୍ ସେତେବେଳେ ପ୍ରଜାତନ୍ତ୍ର ବ୍ୟବସ୍ଥାରେ ଥିବା ଯୁଗ ଯୁଗ ଧରି ଆଦିବାସୀମାନଙ୍କ ପରଂପରାଗତ ଆବାସୀୟ କ୍ଷେତ୍ରାଧିକାର ମଧ୍ୟ ଖ୍ୱଲିଯାଇଥାଏ । ଆଦିବାସୀ ସମାଜର ଏହି ଦୁର୍ଦ୍ଦଶା ପାଇଁ ରାଜ୍ୟକୁ ହିଁ ଦୋଷୀ ସାବ୍ୟସ୍ତ କରାଯାଇଛି କାରଣ ବାହ୍ୟ ଶକ୍ତି ଆଦିବାସୀ ସମାଜକୁ ଗ୍ରାସ କରିବାକୁ ଆରମ୍ଭ କରୁଥିବା ବେଳେ ସେମାନଙ୍କର ସୁରକ୍ଷା ଓ ସମ୍ବଳର ସଂରକ୍ଷଣ ନିମିତ୍ତ ରାଜ୍ୟ ସରକାର କିଛି ପଦକ୍ଷେପ ନେଇ ପାରିନଥାଏ । ତେଣୁ ଏହି ଅନ୍ୟାୟକୁ ବରଦାସ୍ତ କରି ନ ପାରି ଆଦିବାସୀ ସମାଜ ବିଦ୍ରୋହ କରିଥାଏ । ତ୍ରିପୁରା ଭଳି ରାଜ୍ୟରେ ଆଦିବାସୀ ବିଦ୍ରୋହର ଏହା ହିଁ ମୂଳ କାରଣ ଅଟେ ।

ଏହି କାରଣରୁ ଆଜି ପର୍ଯ୍ୟନ୍ତ ଉତ୍ତର-ପୂର୍ବାଞ୍ଚଳ ରାଜ୍ୟ ଗୁଡ଼ିକରେ ବାହାର ଲୋକମାନଙ୍କର ଆଗମନ ଅତ୍ୟନ୍ତ ବିବାଦୀୟ ପରିସ୍ଥିତି ସୃଷ୍ଟି କରିଛି । ଏହି ବିବାଦର ଘେର୍‌ରୁ ଦୂରରେ ରହିବା ପାଇଁ ଏସବୁ ରାଜ୍ୟରେ ରେଳଲାଇନ ନିର୍ମାଣ କାର୍ଯ୍ୟ ବିରୁଦ୍ଧରେ ଲୋକମାନେ ଆନ୍ଦୋଳନ କରି ଆସୁଛନ୍ତି । ଆଦିବାସୀ କ୍ଷେତ୍ରରେ ଏହି ଭାବନାତ୍ମକ ଓ ସାମାଜିକ ଦୃଷ୍ଟିକୋଣକୁ ଦେଖି ନୂଆ ଆଇନରେ ସଂରକ୍ଷଣ ସମ୍ବନ୍ଧରେ କେତେକ ବିଶେଷ ବ୍ୟବସ୍ଥା କରାଯାଇଛି । ଯଦ୍ଵାରା ଆଦିବାସୀ ସମାଜର ପାରଂପାରିକ କ୍ଷେତ୍ରାଧିକାର ସେହି ଅଞ୍ଚଳରେ ଦୃଢ଼ ହୋଇ ରହିବ । ଏହି ସମ୍ବନ୍ଧରେ ବିଶେଷ ବ୍ୟବସ୍ଥା ନିମ୍ନରେ ଦିଆଗଲା ।

(୧) ପ୍ରଥମତଃ ଯଦି କୌଣସି ଅନୁସୂଚୀତ ପଞ୍ଚାୟତ କ୍ଷେତ୍ରରେ ଆଦିବାସୀ ଲୋକସଂଖ୍ୟା ଅଧାରୁ କମ୍ ଥାଏ, ତେବେ ମଧ୍ୟ ଆଇନର ବ୍ୟବସ୍ଥା ଅନୁଯାୟୀ ସେହି ପଞ୍ଚାୟତର ସଦସ୍ୟ ସଂଖ୍ୟା ଅତିକମରେ ଅଧା ଆସନ ଆଦିବାସୀମାନଙ୍କ ପାଇଁ ସଂରକ୍ଷଣ ହୋଇ ରହିବ (ଧାରା ୪-ଛ) ।

(୨) ଦ୍ୱିତୀୟତଃ, ସାଧାରଣ ଆଇନରେ, ଅଧ୍ୟକ୍ଷ ପଦପାଇଁ ବିଭିନ୍ନ ବର୍ଗର ଲୋକଙ୍କ ପାଇଁ ଜନସଂଖ୍ୟା ଅନୁପାତରେ ଆରକ୍ଷଣ କରାଯାଇଛି । କିନ୍ତୁ ଆଦିବାସୀ କ୍ଷେତ୍ରରେ ସମସ୍ତ ପଞ୍ଚାୟତର ଅଧ୍ୟକ୍ଷ ଆସନ ବା ସ୍ଥାନ ଗୁଡ଼ିକୁ ଆଦିବାସୀମାନଙ୍କ ପାଇଁ ସଂରକ୍ଷଣ ହୋଇ ରହିବ (ଧାରା ୪-ଛ) ।

(୩) ଶେଷରେ, ଏପରି ମଧ୍ୟ କିଛି ଜନଜାତିର ଲୋକମାନେ ଅଛନ୍ତି ଯେଉଁମାନେ ନିଜେ ଅଳ୍ପ ସଂଖ୍ୟକ ହେବା ଯୋଗୁଁ କିମ୍ବା ଦୁର୍ବଳ ଆର୍ଥିକ ସ୍ଥିତି ଯୋଗୁଁ ପଞ୍ଚାୟତରେ ପ୍ରତିନିଧିତ୍ୱ କରିପାରନ୍ତି ନାହିଁ । ଏପରି ସ୍ଥଳରେ, ମଧ୍ୟବର୍ତ୍ତି ଏବଂ ଜିଲ୍ଲାସ୍ତରୀୟ ପଞ୍ଚାୟତ ପାଇଁ ରାଜ୍ୟ ସରକାରମାନଙ୍କୁ ଏପରି ଅଧିକାର ଦିଆଯାଇଛି ଯାହାଦ୍ୱାରା ସେମାନେ ଏହି ଜନଜାତିର ସଦସ୍ୟମାନଙ୍କୁ ପଞ୍ଚାୟତରେ ସିଧାସଳଖ ଅନ୍ତର୍ଭୁକ୍ତ କରିପାରିବେ । ଅବଶ୍ୟ ଏମାନଙ୍କ ସଂଖ୍ୟା ନିର୍ବାଚିତ ସଦସ୍ୟମାନଙ୍କ ସଂଖ୍ୟାର ଏକ ଦଶମାଂସରୁ ଅଧିକ ହେବ ନାହିଁ ।

## ସଂବିଧାନରେ ନୂଆ ଆଇନର ସ୍ଥାନ ବା ନୂଆ ଆଇନର ବିଧି ବ୍ୟବସ୍ଥାରେ ଔପଗ୍ରିକ ସ୍ଥାନ :

ଅନୁସୂଚୀତ ଜନଜାତି କ୍ଷେତ୍ରରେ ପଞ୍ଚାୟତ ବ୍ୟବସ୍ଥା ପାଇଁ ନୂଆ ଆଇନର ଔପଗ୍ରିକ ସ୍ଥିତିକୁ ବୁଝିବା ଉପଯୋଗୀ ହେବ । ସଂବିଧାନର ସାଧାରଣ କେନ୍ଦ୍ରୀୟ ଆଇନ ଭାଗ-୯ ରେ କିଛି ସଂଶୋଧନ ବା ପରିବର୍ତ୍ତନ କରାଯାଇ ଏହା ଆଦିବାସୀ କ୍ଷେତ୍ରରେ ଲାଗୁ କରାଯାଇଛି । ଏହାର ଅର୍ଥ ଏହି ଯେ ଆଦିବାସୀ ଅଂଚଳରେ ପରିବର୍ତ୍ତନ ସଂଗେ ସଂଗେ ପୁରା ଆଇନ ପ୍ରଣୟନ ସଂବିଧାନର ଅଂଗ ଅଟେ । ସଂବିଧାନର ଅନ୍ୟାନ୍ୟ ପ୍ରଣିଧାନକୁ ଯେଉଁ ଭଳି ମର୍ଯ୍ୟାଦା ଦିଆଯାଇଛି ଏହାକୁ ମଧ୍ୟ ସେହି ମର୍ଯ୍ୟାଦା ମିଳିଛି । ଏହା ପୁର୍ବଭଳି ସାଧାରଣ କେନ୍ଦ୍ରୀୟ ଆଇନ ହୋଇ ନ ଥିବାରୁ ଏଥିରେ ବର୍ତ୍ତମାନ ଅନ୍ୟ କୌଣସି ପରିବର୍ତ୍ତନ ସାଧାରଣ ଆଇନ୍‌କାନୁନ୍ ପ୍ରକ୍ରିୟା ଦ୍ୱାରା କରାଯାଇପାରିବ ନାହିଁ ।

# ଦ୍ୱିତୀୟ ଅଧ୍ୟାୟ

## ଭବିଷ୍ୟତ କାର୍ଯ୍ୟପନ୍ଥା :

ଅନୁସୂଚୀତ ଅଞ୍ଚଳ ନିମନ୍ତେ ପଞ୍ଚାୟତିରାଜ ବ୍ୟବସ୍ଥାରେ ଲାଗୁକରାଯାଇଥିବା ନୂତନ ନିୟମ ପ୍ରଣୟନକାରୀଙ୍କ ପାଇଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସଫଳତା ଅଟେ । ଏହାକୁ ଆଦିବାସୀ ସାମଜର ବିକାଶ ଓ ସମୃଦ୍ଧି ଦିଗରେ ପ୍ରଥମ କାର୍ଯ୍ୟକାରୀ ଓ ବୈପ୍ଲବିକ ପଦକ୍ଷେପ କୁହାଯାଇପାରେ । ଏହି ପରିସ୍ଥିତିରେ ଗୋଟିଏ ପକ୍ଷରେ ଏହି ସଫଳତାର ଉପଯୁକ୍ତ ବିବେଚନା କରିବା ସଂଗେ ସଂଗେ ଅନ୍ୟପକ୍ଷରେ ଭବିଷ୍ୟତ ପାଇଁ ରଣନୀତି ଏବଂ କାର୍ଯ୍ୟପନ୍ଥା ଆମକୁ ଦୁଇଟି ସ୍ତରରେ ବିଗ୍ଭର କରିବାକୁ ପଡ଼ିବ - ପ୍ରଥମତଃ ନୀତିଗତ ସ୍ତରରେ ଏବଂ ଦ୍ୱିତୀୟତଃ ପ୍ରକୃତ କାର୍ଯ୍ୟ କ୍ଷେତ୍ରରେ ଅର୍ଥାତ୍ ଜନ ଆନ୍ଦୋଳନ ଏବଂ ଜନ ଆଧାରିତ କାର୍ଯ୍ୟକ୍ରମ ମାଧ୍ୟମରେ । ପ୍ରଥମେ ନୀତିଗତ କଥା ସଂପର୍କରେ ଆଲୋଚନା କରାଯାଉ ।

## ନୀତିଗତ ସ୍ତରରେ କାର୍ଯ୍ୟପନ୍ଥା :

ନୂତନ ଆଇନ ବ୍ୟବସ୍ଥାର ପ୍ରଥମ ବିଶେଷତ୍ୱ ହେଉଛି, ଏହା କେବଳ ଅନୁସୂଚୀତ କ୍ଷେତ୍ରରେ ଲାଗୁ କରାଯିବ । ଦ୍ୱିତୀୟତଃ, ଏଥିରେ ବର୍ତ୍ତମାନ ପଞ୍ଚାୟତ ବ୍ୟବସ୍ଥାକୁ ସାମିଲ କରାଯାଇଛି । ତେଣୁ ଆମେ ଯେତେବେଳେ ଆଦିବାସୀ ସ୍ୱାୟତ୍ତ ଶାସନ କଥା କହୁଅଛୁ ସେଥିରେ ସମଗ୍ର ଦେଶର ସମସ୍ତ ଆଦିବାସୀ କ୍ଷେତ୍ର/ଅନୁସୂଚୀତ କ୍ଷେତ୍ର ସାମିଲ ହୋଇଛି । ସେସବୁର ଔପଚାରିକ ରୂପ ଭିନ୍ନ ଭିନ୍ନ ହେଲେ ମଧ୍ୟ ସ୍ୱାୟତ୍ତ ଶାସନ ସମ୍ବନ୍ଧୀୟ ଏହି ବ୍ୟବସ୍ଥାର ଲକ୍ଷ୍ୟ, ଦୃଷ୍ଟି କୋଣ ଓ ଆଦର୍ଶ ଅଭିନ୍ନ ଏବଂ ସ୍ୱୟଂ ପୁଷ୍ଟ ହେଉଥିବାରୁ ଏହି ଆଦିବାସୀ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଏକ ଗୁରୁତ୍ୱ ପୂର୍ଣ୍ଣ ପଦକ୍ଷେପ ଅଟେ । ଏହାକୁ ବ୍ୟାପକ କରିବା ନିମିତ୍ତ ନିମ୍ନଲିଖିତ ନୀତିଗତ ବ୍ୟବସ୍ଥା ଗୁଡ଼ିକ ସଂପର୍କରେ ବିଶେଷ ଧ୍ୟାନ ଦେବା ପାଇଁ ପଡ଼ିବ ।

## ୧. ଉତ୍ତର - ପୂର୍ବ ଆଦିବାସୀ ଅଂଚଳ ସଂପର୍କରେ :

ସଂବିଧାନର ଭାଗ - ୯ (ନବମ ଅନୁସୂଚୀ) ଏବଂ ଭାଗ - ୯ (କ) (ଷଷ୍ଠ ଅନୁସୂଚୀରେ) ଉତ୍ତର - ପୂର୍ବାଞ୍ଚଳ ରାଜ୍ୟ ଗୁଡ଼ିକରେ ଏବଂ ଅନ୍ୟ କେତେକ ଅନୁସୂଚୀତ ଅଞ୍ଚଳରେ ବର୍ତ୍ତମାନ ସୁଦ୍ଧା ଲାଗୁ ହୋଇନାହିଁ । ଏସବୁ ଅଞ୍ଚଳ ସଂପର୍କରେ ବିଗ୍ଭର କରିବା ପାଇଁ ସରକାର ଏ ଯାବତ କୌଣସି ସମିତି ମଧ୍ୟ ଗଠନ କରିନାହାନ୍ତି । ଅନୁସୂଚୀତ କ୍ଷେତ୍ର ସମ୍ବନ୍ଧରେ ଭୂରିଆ କମିଟିର ସୁପାରିଶ ଅନୁଯାୟୀ ପ୍ରଥମ ପଦକ୍ଷେପ ସ୍ୱରୂପ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପାଇଁ ଏକ ବ୍ୟବହାରିକ ଆଇନ ପ୍ରଣୟନ ହୋଇଯିବା ପରେ ଏହିଭଳି ବ୍ୟବସ୍ଥା

ଯେଉଁ ଅଂଚଳରେ ବର୍ତ୍ତମାନ ପର୍ଯ୍ୟନ୍ତ ଭାଗ - ୯ ଏବଂ ଭାଗ ୯ (କ) ଲାଗୁ ହୋଇ ନାହିଁ, ସେ ସବୁ ଅଂଚଳରେ ପରୀକ୍ଷାମୂଳକ ଭାବେ ଲାଗୁ କରାଯିବା ଉଚିତ୍ । ଏଥିନିମନ୍ତେ ଉପଯୁକ୍ତ ସମିତି ଗଠନ କରିବା ପାଇଁ କେନ୍ଦ୍ର ସରକାରଙ୍କ ଉପରେ ଚ୍ୟପ ପକାଇବା ଆବଶ୍ୟକ ।

## ୨. ଅନୁସୂଚୀତ କ୍ଷେତ୍ର ନ ଥିବା ରାଜ୍ୟରେ

ପଶ୍ଚିମ ବଂଗ, ତାମିଲନାଡୁ, କେରଳ ଏବଂ କର୍ଣ୍ଣାଟକ ହିଁ ଏଭଳି ରାଜ୍ୟ ଯେଉଁଠାରେ ଆଦିବାସୀମାନେ ଅଛନ୍ତି କିନ୍ତୁ ଅନୁସୂଚୀତ କ୍ଷେତ୍ର ନାହିଁ । ସେହିସବୁ ରାଜ୍ୟରେ ବସବାସ କରୁଥିବା ଆଦିବାସୀମାନଙ୍କୁ ସାମ୍ବିଧାନିକ ସଂରକ୍ଷଣ ମଧ୍ୟ ମିଳିନାହିଁ । ତେଣୁ ସେମାନେ ଅତି ଦୟନୀୟ ଅବସ୍ଥାରେ ଅଛନ୍ତି ଏବଂ ସେମାନେ ସଂଖ୍ୟା ଲଘୁ ହୋଇଥିବାରୁ ରାଜନୈତିକ ସ୍ତରରେ/ରାଜନୀତିରେ ମଧ୍ୟ ସେମାନଙ୍କର କୌଣସି ପ୍ରଭାବ ନାହିଁ । ଏହି ଅବସ୍ଥାରେ, ସେମାନଙ୍କ ପକ୍ଷନେଇ ସ୍ୱର ଉତ୍ତୋଳନ କରିବା ପାଇଁ ମଧ୍ୟ ସମଗ୍ର ରାଜ୍ୟରେ କେହି ନାହାନ୍ତି । ବର୍ତ୍ତମାନ କେରଳରେ ଆଦିବାସୀମାନଙ୍କ ଅଧିନରେ ଥିବା ଜମିକୁ ସେମାନଙ୍କୁ ଫେରାଇଦେବା ସମ୍ବନ୍ଧୀୟ ଆଇନକୁ ପ୍ରାୟ ସମାପ୍ତ କରିବା ପାଇଁ ରାଜ୍ୟର ନିଷ୍ପତ୍ତି ଏକ ଚିନ୍ତାଜନକ ଉଦାହରଣ ଅଟେ । ଏସବୁ ରାଜ୍ୟରେ ଆଦିବାସୀମାନେ ବସବାସ କରୁଥିବା କ୍ଷେତ୍ର ଗୁଡ଼ିକୁ ଆଦିବାସୀ/ ଅନୁସୂଚିତ କ୍ଷେତ୍ର ଘୋଷଣା କରିବା ପାଇଁ ଜାତୀୟ ସ୍ତରରେ ସ୍ୱର ଉତ୍ତୋଳନ କରି ସେମାନଙ୍କୁ ସ୍ୱାୟତ୍ତ ଶାସନ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ କରିବା ନିତାନ୍ତ ଜରୁରୀ ।

## ୩. ଅଣ ଆଦିବାସୀ କ୍ଷେତ୍ର :

ଯେଉଁ ରାଜ୍ୟରେ ଅନୁସୂଚୀତ କ୍ଷେତ୍ରମାନ ରହିଛି, ସେଠାରେ ଏପରି ବହୁ ଅଂଚଳ ରହିଯାଇଛି, ଯେଉଁଠାରେ କି ସଂଖ୍ୟାଧିକ ଆଦିବାସୀମାନେ ବାସ କରୁଥିବା ସତ୍ତ୍ୱେ ତାହା ଅନୁସୂଚୀତ କ୍ଷେତ୍ର ରୂପେ ଘୋଷଣା କରାଯାଇ ନାହିଁ । ଆଦିବାସୀମାନଙ୍କ ବିକାଶ ନିମନ୍ତେ ୧୯୭୪ ମସିହାରେ ଯେଉଁ ଉପଯୋଜନା ପ୍ରଣୟନ ହୋଇଥିଲା, ସେତେବେଳେ ସ୍ଥିର କରାଯାଇଥିଲା ଯେ ଯେଉଁସବୁ କ୍ଷେତ୍ରରେ ଏହି ଉପଯୋଜନା କାର୍ଯ୍ୟକାରୀ କରାଯିବ ସେ ସବୁ ଅଂଚଳକୁ ଆଦିବାସୀ/ ଅନୁସୂଚୀତ ଅଂଚଳ ଘୋଷଣା କରାଯିବ । ଏହି ନିଷ୍ପତ୍ତି ପରେ ମଧ୍ୟ ୧୯୭୮ ପରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରାଗଲା ନାହିଁ । ଏହା ଫଳରେ ମଧ୍ୟପ୍ରଦେଶ, ଓଡ଼ିଶା, ବିହାର, ରାଜସ୍ଥାନ, ମହାରାଷ୍ଟ୍ର, ଗୁଜୁରାଟ ଭଳି ରାଜ୍ୟରେ ଥିବା ବହୁ ଅନୁସୂଚୀତ ଅଂଚଳକୁ ଆଦିବାସୀ କ୍ଷେତ୍ରରୂପେ ନିଆଯାଇ ନାହିଁ । ତେଣୁ ସେମାନେ ନୂଆ ସ୍ୱାୟତ୍ତ ଶାସନ ବ୍ୟବସ୍ଥାରୁ ବଂଚିତ ରହିବେ । ଯେହେତୁ ବର୍ତ୍ତମାନ ନୂଆ ଆଇନ ବ୍ୟବସ୍ଥା ଆମ ସମ୍ମୁଖରେ ରହିଛି, ଏସବୁ ଅଞ୍ଚଳରେ ଏହି ବ୍ୟବସ୍ଥା ଲାଗୁ କରିବା ପାଇଁ ଏକ ଆନ୍ଦୋଳନ ଆରମ୍ଭ କରାଯାଇ ସମସ୍ତ ଆଦିବାସୀ ବହୁଳ ଅଂଚଳକୁ ଅନୁସୂଚୀତ କ୍ଷେତ୍ରରୂପେ

ଗ୍ରହଣ କରିବା ପାଇଁ ରାଜ୍ୟମାନଙ୍କ ଉପରେ ଚାପ ପକାଯାଇ ପାରନ୍ତା । ଉପଯୋଜନା ଗୁଡ଼ିକରେ ସାଧାରଣତଃ ଯାହାକୁ ମାଡ଼ା (Modified Area Development Approach) କ୍ଷେତ୍ର କୁହାଯାଏ ସେ ସବୁକୁ ଅନୁସୂଚୀରେ ଅନ୍ତର୍ଭୁକ୍ତ କରିବା ପାଇଁ ସୁପାରିଶ କରାଯାଇ ପାରନ୍ତା ।

## ୪. ଉତ୍ତର ପ୍ରଦେଶର ସ୍ୱତନ୍ତ୍ର ସ୍ଥିତି :

ଉତ୍ତର ପ୍ରଦେଶରେ କେବଳ ଗୋଟିଏ ମାତ୍ର ଅଂଚଳକୁ (ଜୌନସାର ବାବର) ଅନୁସୂଚୀତ କ୍ଷେତ୍ରଭାବେ ଘୋଷଣା କରାଯାଇଛି । ଏତଦ୍ ବ୍ୟତୀତ ମଧ୍ୟ ପ୍ରଦେଶକୁ ଲାଗି ରହିଥିବା ଆଦିବାସୀ ଅଧ୍ୟୁଷିତ ଅଂଚଳ ଗୁଡ଼ିକରେ ଅନେକ ଆଦିବାସୀ ସମାଜ ଯଥା ଗଣ୍ଡ, କୋହ୍ଲ ପ୍ରଭୃତିଙ୍କୁ ଅନୁସୂଚୀତଜାତି ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇଥିଲେ ମଧ୍ୟ ସେମାନଙ୍କୁ ସାଂବିଧାନିକ ସଂରକ୍ଷଣ ସୁବିଧା ମିଳିନାହିଁ ଓ ସେମାନେ ଦୁଃଖ କଷ୍ଟରେ କାଳାତିପାତ କରୁଛନ୍ତି । ଏସବୁ ଅଞ୍ଚଳରେ ସୋନଭଦ୍ର, ମିର୍ଜାପୁର, ବାନ୍ଦା ପ୍ରଭୃତି ଜିଲ୍ଲାର ଆଦିବାସୀ ଅଞ୍ଚଳ ବିଶେଷ ଭାବେ ଉଲ୍ଲେଖନୀୟ ଅଟେ । ଏସବୁ ଆଦିବାସୀମାନଙ୍କ ବିରୁଦ୍ଧରେ ହେଉଥିବା ଅନ୍ୟାୟ ଓ ଶୋଷଣକୁ ତୁରନ୍ତ ସମାପ୍ତ କରି ସେମାନଙ୍କ କ୍ଷେତ୍ରକୁ ଅନୁସୂଚୀତ କ୍ଷେତ୍ର ଭାବରେ ଘୋଷଣା କରିବା ପାଇଁ ଆନ୍ଦୋଳନ ହେବା ଆବଶ୍ୟକ ।

## ୫. ଅନୁସୂଚୀତ କ୍ଷେତ୍ରରେ ପ୍ରଶାସନିକ ପୁନର୍ଗଠନ

ଆଦିବାସୀ ଅଞ୍ଚଳ ସମୁହ ପ୍ରତ୍ୟେକ ସ୍ତରରେ ବିଭିନ୍ନ ପ୍ରଶାସନିକ ବ୍ୟବସ୍ଥାର ସୀମାରେଖା ମଧ୍ୟରେ ରହୁଥିବାରୁ ଏହାର ସମସ୍ୟା ଗୁଡ଼ିକୁ ଏଡ଼ାଇ ଦିଆ ଯାଉଥିଲା । ଏସବୁ ଆଦିବାସୀ/ଅନୁସୂଚୀତ ଅଞ୍ଚଳର ସାମାଜିକ, ଆର୍ଥିକ ଏବଂ ଭୌଗଳିକ ସ୍ଥିତିକୁ ଧ୍ୟାନ ଦେଇ ପ୍ରଶାସନିକ ପୁନର୍ଗଠନ ନିମନ୍ତେ ଭୁରିଆ କମିଟି ସୁପାରିଶ କରିଥିଲେ ମଧ୍ୟ ଏହି କାର୍ଯ୍ୟ କୌଣସି ରାଜ୍ୟରେ ଆରମ୍ଭ ହୋଇନାହିଁ । ଏଥିପାଇଁ ସାଧାରଣ ଲୋକଙ୍କ ପକ୍ଷରୁ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଜନମତସୃଷ୍ଟି ଓ ଆନ୍ଦୋଳନ ହେବା ଆବଶ୍ୟକ ।

## ୬. ରାଜ୍ୟସ୍ତରୀୟ ଆଇନ :

ନୂତନ ଆଇନରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥାକୁ ଏକ ନିର୍ଦ୍ଦେଶ ରୂପରେ ତିଆରି କରାଯାଇଛି । ଏହି ନିର୍ଦ୍ଦେଶ ଅନୁଯାୟୀ ରାଜ୍ୟ ବିଧାନ ସଭା ଦ୍ୱାରା କେବଳ ସମସ୍ତ ଆଇନ ପ୍ରଣୟନ କରାଯାଇ ପାରିବ । ଆମ ଆନ୍ଦୋଳନ ତରଫରୁ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ନିମିତ୍ତ ଭୂରିଆ କମିଟିର ସୁପାରିଶ ଅନୁଯାୟୀ ଏକ ବ୍ୟାପକ ଆଇନର ରୂପରେଖ ତିଆରି କରାଯାଇଥିଲା । ଯେହେତୁ ପ୍ରତ୍ୟେକ ଆଇନ ସଂପୃକ୍ତ ରାଜ୍ୟ ଦ୍ୱାରା ପ୍ରଣୟନ କରାଯିବ

ତେଣୁ ଭାରତ ଜନ ଆନ୍ଦୋଳନ ତରଫରୁ ଏହାର ଏକ ସାଧାରଣ ନମୂନା ବା ଢାଞ୍ଚା ତିଆରି କରାଯିବ, ଯେଉଁଥିରୁ ଆମେ ସୁନିଶ୍ଚିତ ହୋଇ ପାରିବା ଯେ ରାଜ୍ୟ ଗୁଡ଼ିକର ଆଇନ କେନ୍ଦ୍ରୀୟ ଆଇନ ଓ ଭୂରିଆ କମିଟିର ସୁପାରିଶର ମୂଳ ଭାବନାରେ କୌଣସି ସାଧାରଣ ଫରକ ରହିବ ନାହିଁ ।

## ଗଣ ଆନ୍ଦୋଳନ ଏବଂ କାର୍ଯ୍ୟକ୍ରମ

ନୂତନ ଆଇନ ବ୍ୟବସ୍ଥା ଦ୍ୱାରା ଆମର ସବୁଠାରୁ ବଡ଼ ଉପଲବ୍‌ଧି ହେବ ଯେ, ''ଗାଁ ସମାଜ'' କୁ ଗ୍ରାମସଭା ରୂପରେ ଆମ ସଂବିଧାନରେ ସ୍ଥାପିତ କରାଯାଇଛି ଏବଂ ତାହାର ବ୍ୟାପକ ଅଧିକାର ପରିସର ଆମକୁ ସ୍ୱୟଂ ସଂପୂର୍ଣ୍ଣ କରିଛି । ଏହି ଐତିହାସିକ ଓ ବୈପ୍ଳବିକ ପରିବର୍ତ୍ତନ ବିଷୟରେ ଲୋକମାନେ ବର୍ତ୍ତମାନ ପର୍ଯ୍ୟନ୍ତ ଅନୁଭବ କରିନାହାନ୍ତି । ତେଣୁ, ସର୍ବପ୍ରଥମେ ଏହି ନୂଆ ଆଇନର ବାର୍ତ୍ତାକୁ ଦୂରଦୂରାନ୍ତରର ସମସ୍ତ ସର୍ବସାଧାରଣଙ୍କ ନିକଟରେ ସଠିକ୍ ଭାବରେ ପହଞ୍ଚାଇବା ଆମର ପ୍ରଥମ କର୍ତ୍ତବ୍ୟ ଅଟେ ।

ଲୋକଙ୍କ ମନର ବେଦନାର ସ୍ୱରକୁ ସିଧାସଳଖ ପ୍ରକାଶ କରିବା ହେଉଛି ଆମ ଆନ୍ଦୋଳନର ସବୁଠାରୁ ବଡ଼ ସ୍ୱାତନ୍ତ୍ର୍ୟତା । ''ଆମ ଗାଁରେ ଆମେ ସରକାର'' ''ଜଳ, ଜଙ୍ଗଲ ଏବଂ ଜମି ଆମର'', ''କାଗଜ ତୁମର ଜମି ଆମର'' ଏବଂ କାରଖାନା ଉପରେ ସମାଜର ମାଲିକାନା'' ଏହିଭଳି ସିଧାସିଧା କଥା ଲୋକଙ୍କୁ କହିବା ପରେ ଆଉ ସେମାନଙ୍କୁ ବୁଝାଇବା ଦରକାର ହୁଏ ନାହିଁ ।

ଏହାର ଲୋକପ୍ରିୟତାକୁ ଦେଖି ବହୁ ଗୁଡ଼ିଏ ସ୍ୱାର୍ଥାନ୍ୱେଷୀ ସଂଗଠନ ଏହାର ପ୍ରକୃତ ତଥ୍ୟ ନ ବୁଝି ଏସବୁ ବିଗ୍ରହକୁ ବ୍ୟବହାରକରି ଜନସାଧାରଣଙ୍କୁ ଏକାଠି କରି ଭିଡ଼ ସୃଷ୍ଟି କରିବା ଆରମ୍ଭ କରି ଦେଇଛନ୍ତି । ନୂଆ ଆଇନ ବ୍ୟବସ୍ଥା ଦ୍ୱାରା ପୂର୍ଣ୍ଣ ଅଧିକାର ମିଳିଯିବା ପରେ ଏହି ପ୍ରବୃତ୍ତି ଆହୁରି ବେଶୀ ବଢ଼ିଯିବାର ଆଶଙ୍କା କରାଯାଉଛି । ତେଣୁ ଏଥିପାଇଁ ବେଳରୁ ହିଁ ଜଗି ରହିବାକୁ ପଡ଼ିବ । ଏଥିପାଇଁ ଆମ ଆନ୍ଦୋଳନର ଉଦ୍ଦେଶ୍ୟ ହେଲା ଯେ ଏହି ନୂଆ ଆଇନ ବ୍ୟବସ୍ଥାରେ ସନ୍ନିବେଶିତ ବୈପ୍ଳବିକ ଚିନ୍ତାଧାରାକୁ ଜନସାଧାରଣ ତଥା ଆଦିବାସୀଙ୍କ ପାଖରେ ଯଥାଶୀଘ୍ର ପହଞ୍ଚାଇବା ।

ଗାଁ ସମାଜକୁ ଗ୍ରାମସଭା ରୂପରେ ମାନ୍ୟତା ବା ସ୍ୱୀକୃତି ଏକ ଐତିହାସିକ ଓ ଯୁଗାନ୍ତ କାରୀ ଘଟଣା ହୋଇ ରହିବ । ଏହି ଗାଁ ସମାଜକୁ ବର୍ତ୍ତମାନ ପର୍ଯ୍ୟନ୍ତ ରାଜ୍ୟ ସମେତ ବହୁ ବିରୋଧୀ ଶକ୍ତି ଏହାର ସ୍ଥିତି ବିପନ୍ନ କରିବା ପାଇଁ ଲାଗି ରହିଥିଲେ ଏବଂ ସେମାନେ ଏହା ବିରୁଦ୍ଧରେ ସଂଗ୍ରାମ ଚଳାଇ ଆସୁଥିଲେ ମଧ୍ୟ ଏ ଦିଗରେ ସଫଳ ହୋଇପାରି ନାହାନ୍ତି । ତେଣୁ ଏହି ନୂତନ ବ୍ୟବସ୍ଥା ଫଳରେ ବର୍ତ୍ତମାନ ଗାଁ-ସମାଜ ଗର୍ବର ସହିତ କହି ପାରିବ ଯେ, ''ମୁଁ ଅଛି, ମୋର ସମାଜ ଅଛି'', ମୋ ସମାଜ ସଂବିଧାନ ଦ୍ୱାରା ସ୍ଥାପିତ ହୋଇଛି ଓ

ନିଜ ବ୍ୟବସ୍ଥାକୁ ନିଜେ ଚଳାଇବାର ସ୍ୱାଭାବିକ ଏବଂ ନୈସର୍ଗିକ ଅଧିକାର ମୋ ସମାଜକୁ ପ୍ରଦାନ କରିବା ସଂଗେ ସଂଗେ ଆତ୍ମ ସୁରକ୍ଷା କରିବାର ଅଧିକାରକୁ ସଂବିଧାନ ଦୃଢ଼ ରୂପେ ସ୍ୱୀକାର କରିଛି । ଫଳସ୍ୱରୂପ, ଆଜିଠାରୁ ଗ୍ରାମ ସମାଜର କୌଣସି ସଭ୍ୟଙ୍କୁ, କିମ୍ବା ତତ୍ ସହିତ ହେଉଥିବା ଅନ୍ୟାୟ ସମ୍ବନ୍ଧରେ ଆମକୁ ସରକାର କିମ୍ବା ସରକାରଙ୍କର କୌଣସି ଅନୁଷ୍ଠାନ ନିକଟରେ ଗୋଡ଼ଭାଙ୍ଗି ଛିଡ଼ା ହେବାକୁ ପଡ଼ିବ ନାହିଁ । ଆମେ, ଆମ ସ୍ଥିତି ମୁତାବକ ଓ ଆମ ସୁରକ୍ଷା ନିମିତ୍ତ କାର୍ଯ୍ୟ କରିପାରିବା ଏବଂ ଏହା ଉପରେ କେହି ବାହ୍ୟ ଶକ୍ତି କୌଣସି ପ୍ରକାର ହସ୍ତକ୍ଷେପ ବା ପ୍ରଭାବ ବିସ୍ତାର କରି ପାରିବେ ନାହିଁ ।

ଆମେ ଆଗରୁ ଆଲୋଚନା କରିଛେ ଯେ, ଗାଁ ସମାଜ ସ୍ୱୟଂ ସଂପୂର୍ଣ୍ଣ ଅଟେ ଏବଂ ଏହି ଅର୍ଥରେ ଗ୍ରାମସଭା ମଧ୍ୟ ସ୍ୱୟଂ ଶାସିତ ଅଟେ । ପରନ୍ତୁ ବର୍ତ୍ତମାନ ପରିସ୍ଥିତିକୁ ନେଇ ପ୍ରତ୍ୟେକ ଗାଁ-ସମାଜର ଅଧିକାରକୁ ଆଦୌ ସ୍ୱୀକାର କରାଯାଉ ନାହିଁ । ତେଣୁ ଏହି ନୂତନ ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ଔପଗ୍ରରିକ ଘୋଷଣା ପ୍ରତ୍ୟେକ ଅନୁସୂଚୀତ କ୍ଷେତ୍ରରେ / ପ୍ରତ୍ୟେକ ଗାଁରେ କରିବାର ଏବେ ସଠିକ୍ ବା ପ୍ରକୃଷ୍ଟ ଅବସର ଆସି ପହଞ୍ଚିଛି । ଏହା ହେବା ଦ୍ୱରା ସାରା ଦୁନିଆକୁ ଆମ ସମାଜର ଗତି, ପ୍ରଗତି ଓ ସ୍ଥିତି ସଂପର୍କରେ ଜଣାଇ ଦିଆଯାଇ ପାରିବ । ଏହି ସମ୍ବନ୍ଧରେ ଆଉ ଏକ କଥା ହେଲା, ଭବିଷ୍ୟତରେ ଆଦିବାସୀ ସମାଜର ଓ ଏହାର ଭୌଗଳିକ ସୀମା ବା କ୍ଷେତ୍ରାଧିକାର ସଂପର୍କରେ ବହୁ ବିବାଦ ସୃଷ୍ଟି ହୋଇପାରେ । ତେଣୁ ଏହି ସ୍ୱାୟତ୍ତ ଶାସନ ବ୍ୟବସ୍ଥା ରେ କ୍ଷେତ୍ରାଧିକାର ବା ସୀମା ନିର୍ଣ୍ଣୟ ସ୍ପଷ୍ଟ ରୂପେ ନିର୍ଦ୍ଧାରିତ ହେବା ଅତ୍ୟନ୍ତ ଜରୁରୀ ଅଟେ । ଯଦି ଗ୍ରାମସମାଜ ଏହି ମାମଲାରେ ଆଲୋଚନା କରିବ ନାହିଁ ତେବେ ସରକାରୀ ସ୍ତରରେ ନୂତନ ଆଇନ ଲାଗୁ ହେଲାବେଳେ ଏହାକୁ ସରକାରୀ ଢ଼ାଞ୍ଚାରେ ତିଆରି କରାଯିବ ଯାହାଦ୍ୱରା କେଉଁ କ୍ଷେତ୍ର କାହା ସୀମା ରେଖା ମଧ୍ୟରେ ସାମିଲ କରାଗଲା ତାହା ଲୋକମାନଙ୍କୁ ବହୁଦିନ ଧରି ଜଣା ପଡ଼ିବ ନାହିଁ ଫଳରେ କିଛିଦିନ ପରେ ଏହାକୁ ନେଇ କଳହର ସୂତ୍ରପାତ ହେବ ଏବଂ ଏହାର ସୁଯୋଗ ନେଇ ବିରୋଧୀ ଶକ୍ତିର ପୁନଃ ପ୍ରବେଶ ସମ୍ଭାବ୍ୟ ହୋଇଯିବ ଏବଂ ସମସ୍ତଙ୍କୁ ଏହା କହିବା ପାଇଁ ସୁଯୋଗ ମିଳିବ ଯେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଖାଲି ଆଦର୍ଶବାଦର ଫାଙ୍କା ଆବାଜ ଅଟେ । ତେଣୁ ଏହି ସମସ୍ୟାର ସମାଧାନ କେବଳ ସରକାର ହିଁ କରିପାରିବେ ।

ପ୍ରତ୍ୟେକ ଗ୍ରାମସମାଜ ଗ୍ରାମସଭା ରୂପେ ନିଜକୁ ଘୋଷଣା କରିବା ପରେ ପରେ ନୂତନ ଆଇନ ଅନୁଯାୟୀ ଦିଆଯାଇଥିବା ଅଧିକାରକୁ ସୁପରିଗ୍ୱଳିତ ମାର୍ଗରେ ପ୍ରୟୋଗ କରି ନିଜ ବ୍ୟବସ୍ଥା ଚଳାଇବା ଜରୁରୀ ଅଟେ । ନୂତନ ଆଇନର ପରିସର ଏତେ ବ୍ୟାପକ ଯେ ସମସ୍ତ ମାମଲାକୁ ଏକାସାଙ୍ଗରେ ହାତକୁ ନେବା ଖୁବ୍ କଷ୍ଟକର ହେବ ଏବଂ ସବୁ ଏକକାଳୀନ କରିବା ମଧ୍ୟ ଜରୁରୀ ନୁହେଁ । ତେଣୁ ଯେଉଁଥିରେ ଅବରୋଧ ବା କଠିନତାର ସମ୍ଭାବନା ଅଛି ତାକୁ ବାଦ ଦେଇ ଅନ୍ୟ ମାମଲାଗୁଡ଼ିକୁ କାର୍ଯ୍ୟ କରିବା ପାଇଁ ପ୍ରଥମେ ପଦକ୍ଷେପ ନେବା ଅତ୍ୟନ୍ତ ଆବଶ୍ୟକ ଅଟେ । କାରଣ ଗୋଟିଏ କାର୍ଯ୍ୟରେ ସଫଳତା

ମିଳିଲେ ଅପର କାର୍ଯ୍ୟଟି କରିବା ପାଇଁ ଯଥେଷ୍ଟ ଆଗ୍ରହ ଜାଗ୍ରତ ହେବା ସଂଗେ ସଂଗେ ଧୀରେ ଧୀରେ ଗାଁ ସମାଜ ଆଗକୁ ବଢ଼ିବ । ଏହା ସତ୍ୟ ଯେ, ପ୍ରତ୍ୟେକ ସମାଜକୁ ନିଜପାଇଁ ବିସ୍ତୃତ କାର୍ଯ୍ୟକ୍ରମ ନିଜକୁ ହିଁ ପ୍ରସ୍ତୁତ କରିବା ପାଇଁ ପଡ଼ିବ ଅନ୍ୟଥା ରଣନୀତି/କାର୍ଯ୍ୟପନ୍ଥା ଅସ୍ପଷ୍ଟ ହେଲେ ବିରୋଧୀ ଶକ୍ତିଙ୍କ ପ୍ରଭାବ ବଢ଼ିଯିବ । ନିଜ ସମାଜର ସମସ୍ୟା ଓ ଦୁର୍ବଳତା ସବୁକୁ ବିଗ୍ଭର ଆଲୋଚନା କରି କାର୍ଯ୍ୟକ୍ରମ ଆରମ୍ଭ କରିବା ଉପଯୁକ୍ତ ହେବ । ଆମେ ଆମ ପରମ୍ପରାର ମୂଳଦୁଆ ଉପରେ ଆଧାର କରି ନୂଆ ବ୍ୟବସ୍ଥା ରଚନା କଲାବେଳେ, ଆମ ସ୍ଥିତିରେ କେଉଁଠି ମଇଳା ଲାଗି ରହିଛି ତାହା ଅନୁଧ୍ୟାନ କରିବା ନିତାନ୍ତ ଜରୁରୀ ଅଟେ ନଚେତ ଏଇ ଅଳନ୍ଧୁ/ମଇଳା ପାଇଁ ଆମ ମୂଳଦୁଆ ଦୁର୍ବଳ ହୋଇ ପଡ଼ିବ ।

ବର୍ତ୍ତମାନ ଝାଡ଼ଖଣ୍ଡ ଅଞ୍ଚଳରେ ମହିଳାମାନଙ୍କର ଅବସ୍ଥା ସଂପର୍କରେ ଉଚ୍ଚତମ ନ୍ୟାୟାଳୟ ଦ୍ୱାରା କନ୍ୟା ସନ୍ତାନର ଅଧିକାର ସମ୍ବନ୍ଧରେ ଦିଆଯାଇଥିବା ରାୟ ପ୍ରକାଶ ପାଇଛି । ଏହି ବିବାଦର ଆରମ୍ଭ ଏବଂ ମହିଳା ମାନଙ୍କର ଶୋଚନୀୟ ସ୍ଥିତିର ମୂଳକାରଣ, କେବଳ ସମାଜର ଦୁର୍ବଳତା ଯୋଗୁଁ ହୋଇଅଛି । ଆଜି ଜମିକୁ କେବଳ ସମ୍ପତ୍ତି ବୋଲି ଧରିନେଇ ନିଜ ଅଧିକାର ସାବ୍ୟସ୍ତ କରାଯାଉଅଛି । ସ୍ୱାର୍ଥପରତା ଏତେଦୂର ବଢ଼ିଯାଇଛି ଯେ, ଆମ ସମାଜ କେବେ ହେଁ ଚିନ୍ତା କରିନାହିଁ ଯେ ଆଦିବାସୀ ସମାଜରେ ମଧ୍ୟ ନିରାଶ୍ରିତ ଅଛନ୍ତି । ପରନ୍ତୁ, ସାଧାରଣ ସମାଜର ଲୋକେ ନିରାଶ୍ରିତଙ୍କ ପାଇଁ ପେନସନ୍ ବା ଭତ୍ତାନିମିତ୍ତ ପ୍ରାର୍ଥନା ପତ୍ର ଧରି ଦୌଡ଼ୁଛନ୍ତି । ଏହି ପରିପେକ୍ଷୀରେ ମହିଳାମାନଙ୍କ ସହ ନ୍ୟାୟ ଏବଂ ସେମାନଙ୍କୁ ସମାନ ଅଧିକାର ଦେଇ ସାମାଜିକ ବ୍ୟବସ୍ଥାକୁ ସୁଦୃଢ଼ କରିବା ସର୍ବପ୍ରଥମ ପଦକ୍ଷେପ ହେବା ଉଚିତ୍ । ଆହୁରି ମଧ୍ୟ ଆଦିବାସୀ ମହିଳା/କନ୍ୟାର ସ୍ଥିତି ସଂପର୍କରେ, ସେ କାହିଁକି ମହାନଗରୀର ବଜାରର କୌଣସି ଘରେ ଗ୍ଭକରାଣୀ କାମ କରିବା ପାଇଁ ବାଧ୍ୟ ହେଉଛି ? ଏହି ପ୍ରଶ୍ନ ହିଁ ଗାଁ ସମାଜର ପ୍ରଥମ ପ୍ରଶ୍ନ ହେବା ଆବଶ୍ୟକ । ଏହା ସଂଗେ ସଂଗେ ମଦ୍ୟପାନ, କରଜ ବା ଋଣ ସମସ୍ୟା, ବଜାର ନିୟନ୍ତ୍ରଣ, ଶିକ୍ଷାୟତନର ପରିଗ୍ଭଳନା, ସ୍ୱାସ୍ଥ୍ୟ ସେବା ବ୍ୟବସ୍ଥା ମଧ୍ୟ ଅତ୍ୟନ୍ତ ଜରୁରୀ ଅଟେ । ଏ ସବୁର ସମାଧାନ ଦ୍ୱରା ସମାଜରେ ଏକ ନୂଆ ଚେତନାର ଜାଗୃତି ହେବ । ଏଥି ସହିତ ସାମାଜିକ କଲ୍ୟାଣ ଓ ବିକାଶ ପାଇଁ ମିଳୁଥିବା ଅନୁଦାନ ସମ୍ବନ୍ଧରେ ସମାଜକୁ ବିଗ୍ଭର କରିବା ପାଇଁ ପଡ଼ିବ କାରଣ ଅନୁଦାନ ଭିକ୍ଷା ବା ଦାନ ଆକାରରେ ମିଳୁଥିଲେ ଏଥିରେ ସମାଜର ମର୍ଯ୍ୟାଦା ଏବଂ ସମ୍ମାନ କ୍ଷୁର୍ଣ୍ଣ ହେବ । ତେଣୁ ଅନୁଦାନ ଗୁଡ଼ିକ ସାହାଯ୍ୟ ବା ଅନୁକଂପା ଆକାରରେ ନ ମିଳି ଅନୁଦାନ ଅର୍ଥରେ ମିଳିବା ଜରୁରୀ ଅଟେ ।

ଗାଁ ସଂଗେ ସଂଗେ ଆମକୁ ବ୍ଲକ ଏବଂ ଜିଲ୍ଲା ସ୍ତରରେ ମଧ୍ୟ ସଂଗଠନର ମୂଳଦୁଆ ଶୀଘ୍ର ସ୍ଥାପନା କରିବା ପାଇଁ ପଡ଼ିବ । ଏହି ସ୍ତରର ପଞ୍ଚାୟତ ମଧ୍ୟ ଯେପରି ସ୍ୱାୟତ୍ତ ଶାସନ ବ୍ୟବସ୍ଥା ରୂପରେ ବିକଶିତ ହେବ ତାହା ଦେଖିବାକୁ ପଡ଼ିବ । ଏହି ପଞ୍ଚାୟତରେ ପ୍ରତିନିଧିତ୍ୱ କରୁଥିବା ବ୍ୟକ୍ତିମାନେ ସର୍ବଦା ଏହା ଅନୁଭବ କରିବା ଦରକାର ଯେ ସେମାନଙ୍କର

କାର୍ଯ୍ୟକଳାପକୁ ଲୋକଙ୍କମଧ୍ୟରୁ ନିରୀକ୍ଷଣ କରାଯାଉଛି । ଆହୁରି ମଧ୍ୟ, ସେମାନେ ଗଣତାନ୍ତ୍ରିକ ଉପାୟରେ ଲୋକଙ୍କ ବିକାଶ ନିମିତ୍ତ ପୂର୍ଣ୍ଣ ପ୍ରାଣରେ ଚେଷ୍ଟା କରୁଛନ୍ତି ଅଥବା ନିଜ ସ୍ୱାର୍ଥସିଦ୍ଧି ନିମନ୍ତେ ଏକ ଦଲାଲର ଭୂମିକା ଗ୍ରହଣ କରିଛନ୍ତି, ଏସବୁର ମଧ୍ୟ ପୂର୍ଣ୍ଣ ନିରୀକ୍ଷଣ ହେବା ଆବଶ୍ୟକ ।

ଆଦିବାସୀ ସ୍ୱାୟତ୍ତଶାସନ ସମ୍ବନ୍ଧୀୟ ଏହି ଗୁରୁତ୍ୱପୂର୍ଣ୍ଣ ବୈପ୍ଳବିକ ଆଇନ ପ୍ରଣୟନ ହେବା ପରେ ଆମର ଦାୟିତ୍ୱ ଆହୁରି ହଜାରେ ଗୁଣ ବଢ଼ିଯାଇଛି । ସ୍ୱାୟତ୍ତ ଶାସନ ସ୍ଥାପନ ପାଇଁ ଏକ ସଶକ୍ତ, ଦୃଢ଼ ଗଣ-ଆନ୍ଦୋଳନ ଅତ୍ୟନ୍ତ ଆବଶ୍ୟକ ଅଟେ, ସାଧାରଣ ଲୋକେ ନିଜ କାର୍ଯ୍ୟ କଳାପକୁ ଯେପରି ସୂତ୍ରରୁ ରୂପେ ତୁଲାଇ ଆଗକୁ-ଆଗ ଚାଲି ପାରିବେ ଏବଂ ଆନ୍ଦୋଳନ ମାଧ୍ୟମରେ ଧୀରେ ଧୀରେ ବାହ୍ୟ ଶକ୍ତିର ଅନୁପ୍ରବେଶ ଓ ପ୍ରଭାବକୁ କମାଇ ଦେବେ, ଏହାହିଁ ହେଉଛି ଏକ ପ୍ରକୃତି ଗଣ ଆନ୍ଦୋନଳର ଅସଲ ପରିଚୟ । ପ୍ରତ୍ୟେକ ବ୍ୟକ୍ତି ଭିତରେ ଜାଗୃତ ସେହି ଚେତନା ସହିତ ଆନ୍ଦୋଳନର ସମସ୍ତ ଭାବଧାରା ଏକାକାର ହୋଇଯାଉ । ଏହି ନବଚେତନାରୁ ଜନ୍ମନେବ ଏକ ନୂତନ ସମାଜ ଯେଉଁଠି ଅନ୍ୟାୟ, ଅତ୍ୟାଚାର, ବିସମତା, ଘୃଣା, ଛନ୍ଦକପଟ ଇତ୍ୟାଦି ସମସ୍ତ ଅମାନବୀୟ ସଂସ୍କୃତି ବଦଳରେ ରହିଥିବ ସତ୍ୟ, ଅହିଂସା, ନ୍ୟାୟ, ପ୍ରେମ, ସମତା ଏବଂ ସମସ୍ତ ମାନବୀୟ ଗୁଣ ।

**ଅନୁସୂଚୀତ ଅଞ୍ଚଳ ନିମନ୍ତେ ପଞ୍ଚାୟତରାଜ ସଂପର୍କୀୟ ଯେଉଁ ବିଶେଷ ଅଧିନୀୟମ ଭାରତର ସଂସଦଦ୍ୱାରା ପାଶହୋଇ ଆଇନରେ ପରିଣତ ହୋଇଅଛି ଏବଂ ୨୪ ।୧୨ ।୯୬ରୁ ଲାଗୁ କରାଯାଇଛି ତାହାର ଓଡ଼ିଆ ଅନୁବାଦ ନିମ୍ନରେ ପ୍ରଦାନ କରାଗଲା ।**

## ପଞ୍ଚାୟତ-ଉପବନ୍ଧ (ଅନୁସୂଚୀତ କ୍ଷେତ୍ରପାଇଁ ସଂପ୍ରସାରିତ) ଅଧିନିୟମ - ୧୯୯୬

ଧରା ୧. ଏହି ଅଧିନିୟମରେ ସଂକ୍ଷିପ୍ତ ନାମ ଓ ପରିପ୍ରକାଶ ପଞ୍ଚାୟତ ଉପବନ୍ଧ (ଅନୁସୂଚୀତ କ୍ଷେତ୍ର ସମ୍ବଳିତ) ଅଧିନିମୟ, ୧୯୯୬ ଅଟେ ।

ଧାରା ୨. ଏହି ଅଧିନିୟମରେ ସନ୍ଦର୍ଭ ଅନ୍ୟଥା ଆବଶ୍ୟକ ମନେ ନ କଲେ ''ଅନୁସୂଚୀତ କ୍ଷେତ୍ର'' କହିଲେ ସଂବିଧାନର ଅନୁଚ୍ଛେଦ ୨୪୪ ଖଣ୍ଡ (୧) ଅନୁଯାୟୀ ଲିଖିତ ଅନୁସୂଚୀତ କ୍ଷେତ୍ରକୁ ବୁଝିବା ପାଇଁ ହେବ ।

ଧାରା ୩. ପଞ୍ଚାୟତ ସମ୍ବନ୍ଧିତ ସଂବିଧାନର ଭାଗ - ୯ ବା ନବମ ଅନୁଚ୍ଛେଦର ଉପବନ୍ଧ ଗୁଡ଼ିକର ଉପବନ୍ଧ ଧାରା ୪ ରେ କରାଯାଇଥିବା ବ୍ୟତିକ୍ରମ ଏବଂ ସଂଶୋଧନ ସବୁ ଅନୁସୂଚୀତ କ୍ଷେତ୍ର ପାଇଁ ଲାଗୁ କରାଯିବ ।

ଧରା ୪ . ସଂବିଧାନର ଭାଗ - ୯ ବା ନବମ ଅନୁଚ୍ଛେଦରେ ଅନ୍ତର୍ଗତ ଧାରା ଗୁଡ଼ିକ ସମ୍ବନ୍ଧରେ କୌଣସି ରାଜ୍ୟର ବିଧାନ ସଭା ଏପରି ନିୟମ ପ୍ରଣୟନ କରି ପାରିବ, ଯଦ୍ୱାରା ନିମ୍ନଲିଖିତ ବିଷୟ ଗୁଡ଼ିକ ପ୍ରଭାବିତ ହେଲେ ମଧ୍ୟ ମୂଳ ଆଧାର ବା ମୂଳ ଚିନ୍ତାଧାରା ଅପରିବର୍ତ୍ତିତ ରହିବ ।

(କ) ପଞ୍ଚାୟତ ସମ୍ବନ୍ଧରେ ରାଜ୍ୟ ପ୍ରଣୟନ କରୁଥିବା ଆଇନ, ଏହାର ପ୍ରଥା, ବିଧି, ସାମାଜିକ ଏବଂ ଧାର୍ମିକ ପଦ୍ଧତି ଏବଂ ସାମୁହିକ ସମ୍ବଳର ପରମ୍ପରା ଗତ ସୁରକ୍ଷା ପଦ୍ଧତିର ଅନୁରୂପ ହେବ ବା ପ୍ରଚଳିତ ପାରମ୍ପରିକ ବ୍ୟବସ୍ଥାକୁ ଅପରିବର୍ତ୍ତିତ ରଖାଯିବ ।

(ଖ) ଯେଉଁ ସ୍ଥାନରେ ଗୋଟିଏ ଜନ ସମୁଦାୟ ସମାବିଷ୍ଟ / ଏକତ୍ରିତ ହୋଇ ପରଂପରା ଏବଂ ପ୍ରଥା ଅନୁଯାୟୀ କାର୍ଯ୍ୟ ବ୍ୟବସ୍ଥା କରୁଥିବେ ସେହିଭଳି ବସତି କିମ୍ବା ବସତି ସମୂହ ଅଥବା ଛୋଟ ଗାଁ, ପଡ଼ା, କିମ୍ବା ପଡ଼ା ଗାଁ ସମୁହକୁ ନେଇ ଗ୍ରାମ ଗଠନ ହେବ ।

(ଗ) ପ୍ରତ୍ୟେକ ଗ୍ରାମରେ ଏକ ଗ୍ରାମ ସଭା ରହିବ, ଏଥିରେ ଯେଉଁ ସଦସ୍ୟମାନେ ଅନ୍ତର୍ଭୁକ୍ତ ହେବେ, ସେମାନଙ୍କର ନାମ ମଧ୍ୟ ଗ୍ରାମ ସ୍ତରରେ ହେଉଥିବା ପଞ୍ଚାୟତ ନିର୍ବାଚନ ସମ୍ବନ୍ଧୀୟ ନାମାବଳୀରେ ଉଲ୍ଲେଖ ରହିବ । ସୁତରାଂ ଗ୍ରାମ୍ୟ ସ୍ତରରେ ପଞ୍ଚାୟତ ନିର୍ବାଚନ ପାଇଁ ତାଲିକାଭୁକ୍ତ ଭୋଟରମାନେ ଏହାର ସଦସ୍ୟ ହେବେ ।

(ଘ) ପ୍ରତ୍ୟେକ ଗ୍ରାମସଭା, ସମାଜର ସଂସ୍କୃତି, ପରମ୍ପରା ଏବଂ ପ୍ରଚଳିତ ପ୍ରଥାର ପ୍ରତିନିଧିତ୍ୱ କରିବ, ଏବଂ ଏହା ସାମୁହିକ ବିବାଦ ବା କଳହର ସୁ ସମାଧାନ କରିବା ସଂଗେ ସଂଗେ ପାରମ୍ପରିକ ଚଳଣି, ପ୍ରଥା, ଗୋଷ୍ଠୀ ସମ୍ବଳ ଓ ସଂସ୍କୃତିର ସଂରକ୍ଷଣ ଏବଂ ପରିକ୍ଷଣ କରିବା ପାଇଁ ମଧ୍ୟ ସମର୍ଥ ହେବ ।

(ଙ) ପ୍ରତ୍ୟେକ ଗ୍ରାମସଭା :-

(i) ଗ୍ରାମ ସ୍ତରରେ ପଞ୍ଚାୟତ ଦ୍ୱାରା ହେଉଥିବା ଯୋଜନା, କାର୍ଯ୍ୟକ୍ରମ ଇତ୍ୟାଦି ପରିଯୋଜନାରେ ରୂପାନ୍ତରିତ ହେବା ପୂର୍ବରୁ ଗ୍ରାମର ସାମାଜିକ ଏବଂ ଆର୍ଥିକ ବିକାଶ ନିମନ୍ତେ ଏହି ଯୋଜନା ଓ କାର୍ଯ୍ୟକ୍ରମ ଏବଂ ପରିଯୋଜନା ଗୁଡ଼ିକୁ ଗ୍ରାମ ସଭା ଅନୁମୋଦନ କରିବ ।

(ii) ଦାରିଦ୍ର୍ୟ ଦୂରୀକରଣ ଏବଂ ଅନ୍ୟ କାର୍ଯ୍ୟକ୍ରମ ଗୁଡ଼ିକ ପାଇଁ ଉପଯୁକ୍ତ ଉପଭୋକ୍ତା ଚୟନ ବା ନିର୍ଣ୍ଣୟ ନିମନ୍ତେ ଉତ୍ତର ଦାୟୀ ହେବ ।

(ଚ) ଗ୍ରାମ ସ୍ତରରେ ପଞ୍ଚାୟତ ଦ୍ୱାରା ଖଣ୍ଡ (ଙ) ର ନିର୍ଦ୍ଧାରିତ ଯୋଜନା, କାର୍ଯ୍ୟକ୍ରମ ଏବଂ ପରିଯୋଜନା ନିମିତ୍ତ ଉଦ୍ଦିଷ୍ଟ ଅର୍ଥ ସଦୁପଯୋଗର ପ୍ରମାଣ ପତ୍ର ଗ୍ରାମସଭା ଠାରୁ ସଂପୃକ୍ତ ପଞ୍ଚାୟତ ହାସଲ କରିବ ।

(ଛ) ସଂବିଧାନର ନବମ ଅନୁସୂଚୀ ବା ଭାଗ ୯ ଅନ୍ତର୍ଗତ ଆରକ୍ଷଣ ଧାରା ଅନୁଯାୟୀ ପ୍ରତ୍ୟେକ ପଞ୍ଚାୟତର ଅନୁସୂଚୀତ କ୍ଷେତ୍ରପାଇଁ ସ୍ଥାନ ସଂରକ୍ଷଣ, ଉକ୍ତ ପଞ୍ଚାୟତର ଜନସଂଖ୍ୟାର ସେହି ସମୁଦାୟ ଅନୁପାତକୁ ନେଇ କରାଯିବ । କିନ୍ତୁ ଅନୁସୂଚୀତ ଜାତି/ଜନଜାତିଙ୍କ ନିମିତ୍ତ ଆରକ୍ଷଣ, ଉକ୍ତ ସ୍ଥାନର ମୋଟ ଆସନ ସଂଖ୍ୟାର ଅଧାରୁ କମ୍ ହେବ ନାହିଁ ।

କିନ୍ତୁ ଅନୁସୂଚୀତ ଜାତି/ଜନଜାତିମାନଙ୍କ ଅଧ୍ୟକ୍ଷ ଆସନ ବା ପଦ ଗୁଡ଼ିକର ସମସ୍ତ ସ୍ଥାନ ଏବଂ ସମସ୍ତ ସ୍ତରରେ କେବଳ ଅନୁସୂଚୀତ ଜନଜାତିଙ୍କ ପାଇଁ ଆରକ୍ଷିତ/ସଂରକ୍ଷିତ ହୋଇ ରହିବ ।

(ଜ) ଯେଉଁଠାରେ ମଧ୍ୟବର୍ତ୍ତୀ ସ୍ତର କିମ୍ବା ଜିଲ୍ଲା ସ୍ତରୀୟ ପଞ୍ଚାୟତରେ ଅନୁସୂଚୀତ ଜନଜାତିଙ୍କ ପ୍ରତିନିଧିତ୍ୱ ନାହିଁ, ରାଜ୍ୟ ସରକାର ଏପରି ସ୍ଥଳରେ ଅନୁସୂଚୀତ ଜନଜାତିର ବ୍ୟକ୍ତିଙ୍କୁ ମନୋନୀତ କରିପାରିବେ । କିନ୍ତୁ ଏପରି ମନୋନୟନ ସେହି ପଞ୍ଚାୟତରେ

ନିର୍ବାଚିତ ହୋଇଥିବା ମୋଟ ସଦସ୍ୟ ସଂଖ୍ୟାର ଏକ ଦଶମାଂଶରୁ ବେଶୀ ହେବ ନାହିଁ ।

(ଝ) ପଞ୍ଚାୟତ ସୀମା ଭିତରେ ଥିବା ଅନୁସୂଚୀତ କ୍ଷେତ୍ରରେ ବିକାଶ ପରିଯୋଜନା ଗୁଡ଼ିକ କାର୍ଯ୍ୟକାରୀ କରିବା ନିମିତ୍ତ ଜମି ଦଖଲ ବା ଭୂ-ଅର୍ଜନ କରିବା ପୂର୍ବରୁ ଏହା ଦ୍ୱାରା ଆକ୍ରାନ୍ତ ହେଉଥିବା ବ୍ୟକ୍ତିମାନଙ୍କ ପୁନଃ ଥଇଥାନ ସମ୍ବନ୍ଧରେ ପୂର୍ବରୁ ଗ୍ରାମସଭା ସହିତ ପରାମର୍ଶ କରାଯିବ ଏବଂ ଅନୁସୂଚୀତ କ୍ଷେତ୍ରରେ ପରିଯୋଜନା ଗୁଡ଼ିକର ବାସ୍ତବ ରୂପାୟନ ଓ ଏହାର ସଂଯୋଜନା ରାଜ୍ୟ ସ୍ତରରେ ସମନ୍ୱିତ କରାଯିବ ।

(ଟ) ଅନୁସୁଚୀତ ଅଂଚଳରେ ଲଘୁ ଜଳଭଣ୍ଡାର ବା କ୍ଷୁଦ୍ର ଜଳଯୋଜନା କାର୍ଯ୍ୟକାରୀ ହେବାକୁ ଥିଲେ ଏହାକୁ ଗ୍ରାମସଭା ଦ୍ୱାରା ପଞ୍ଚାୟତ ହାତରେ ଦାୟିତ୍ୱ ଅର୍ପଣ କରାଯିବ ।

(ଠ) ନିଲାମ ଦ୍ୱରା ଲଘୁ ବା ଗୌଣ ଖଣିଜ ପଦାର୍ଥର ସଦୁପଯୋଗ ନିମିତ୍ତ ଲିଜ୍ ବା ପଟ୍ଟା ଦେବା ପୂର୍ବରୁ ଗ୍ରାମସଭା କିମ୍ବା ସମୁଚିତ ସ୍ତରରେ ପଞ୍ଚାୟତର ସୁପାରିଶକୁ ଆଦେଶନାମା ବା ବାଧ୍ୟତା ମୂଳକ ବୋଲି ଧରାଯିବ ।

(ଡ) ଅନୁସୂଚୀତ କ୍ଷେତ୍ରରେ ଏଭଳି ଶକ୍ତି ପ୍ରଦାନ କଲାବେଳେ, ଗ୍ରାମସଭା ଗୁଡ଼ିକ ସ୍ୱାୟତ୍ତ ଶାସନ ସଂସ୍ଥା ରୂପରେ ନିମ୍ନ ଲିଖିତ ବିଷୟରେ କେତେକ ନିର୍ଦ୍ଦିଷ୍ଟ ଆଇନ ପ୍ରଣୟନ କରିପାରିବେ -

(i) ମଦ୍ୟପାନ ନିଷେଧ କିମ୍ବା ମାଦକ ଦ୍ରବ୍ୟ ବିକ୍ରୀ ଏବଂ ସେବନକୁ ନିୟନ୍ତ୍ରଣ କରିବା ପାଇଁ ବ୍ୟବସ୍ଥା ।

(ii) ଗୌଣ / ଲଘୁ ବନଜାତ ଦ୍ରବ୍ୟର ସତ୍ତ୍ୱାଧିକାର ବା ମାଲିକାନା ।

(iii) ଅନୁସୂଚୀତ କ୍ଷେତ୍ରରେ ଭୂମିକୁ ଜବର ଦଖଲରୁ ରକ୍ଷା କରିବା, ଅନୁସୂଚୀତ ଜନଜାତିର କୌଣସି ଜମିକୁ ଅନ୍ୟାୟ ଅନୀତିରେ ଜବର ଦଖଲ କରାଯାଇଥିଲେ ପୁନରୁଦ୍ଧାର କରିବା ନିମିତ୍ତ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଶକ୍ତି ।

(iv) ଗାଁ ହାଟ-ବଜାରକୁ (ତାହା ଯେ କୌଣସି ନାମରେ ହେଉନା କାହିଁକି) ପରିଚ୍ଳନା କରିବା ।

(v) ଅନୁସୂଚୀତ ଜାତି ବା ଗିରୀଜନ (ଆଦିବାସୀ) ମାନଙ୍କୁ ଦିଆ ଯାଉଥିବା ଋଣ ବା କରଜ ନିୟନ୍ତ୍ରଣ କରିବା ବା ହାତକୁ ନେବା ।

(vi) ସମସ୍ତ ସାମାଜିକ ବିଭାଗ (Sectors) ଅନ୍ତର୍ଭୁକ୍ତ ଅନୁଷ୍ଠାନ ବା ସଂସ୍ଥା ଗୁଡ଼ିକ ଏବଂ ଏହାର କର୍ମକର୍ତ୍ତା ମାନଙ୍କ ଉପରେ ନିୟନ୍ତ୍ରଣ ।

(vii) ସ୍ଥାନୀୟ ଯୋଜନା ଏବଂ ଏପରି ଯୋଜନା ଅନ୍ତର୍ଗତ ଜନଜାତିମାନଙ୍କ ନିମିତ୍ତ ଉପଯୋଜନା ଗୁଡ଼ିକ ଉପରେ ନିୟନ୍ତ୍ରଣ ।

(ଢ)	ରାଜ୍ୟ ବିଧାନସଭା ଗୁଡ଼ିକ ପଞ୍ଚାୟତକୁ ଏଭଳି ଶକ୍ତି ଏବଂ ଆଇନଗତ ଅଧିକାର ପ୍ରଦାନ କରିବ  ଯଦ୍ୱାରା ସେମାନେ ସ୍ୱାୟତ୍ତ ଶାସନ ସଂସ୍ଥା ଭଳି ପୂର୍ଣ୍ଣରୂପେ କାର୍ଯ୍ୟକରିବା ପାଇଁ ସମର୍ଥ ହେବେ ଏବଂ ଏଭଳି ଆଇନ ପ୍ରଣୟନ କରିବେ ଯଦ୍ୱାରା ଉଚ୍ଚସ୍ତରରେ ପଞ୍ଚାୟତ ଗୁଡ଼ିକର ଏବଂ ନିମ୍ନ ସ୍ତରରେ ଥିବା ପଞ୍ଚାୟତ ବା ଗ୍ରାମସଭାର ଶକ୍ତି ଏବଂ ଅଧିକାରରେ କେହି ହସ୍ତକ୍ଷେପ କରିବେ ନାହିଁ ।

(ଣ)	ରାଜ୍ୟ ବିଧାନ ମଣ୍ଡଳ/ବିଧାନ ବା ବ୍ୟବସ୍ଥାପକ ସଭା, ଅନୁସୂଚୀତ କ୍ଷେତ୍ରରେ ଜିଲ୍ଲା ସ୍ତରରେ ପଞ୍ଚାୟତ ଗୁଡ଼ିକର ପ୍ରଶାସନିକ ବ୍ୟବସ୍ଥା ନିରୂପଣ ବା ପରିକଳ୍ପନା କଲାବେଳେ ଷଷ୍ଠ ଅନୁସୂଚୀର ଆଦର୍ଶକୁ ଅନୁକରଣ ବା ଅନୁରକ୍ଷଣ କରିବା ପାଇଁ ଚେଷ୍ଟା କରିବେ ।

ଧାରା ୫.	ଏହି ଅଧିନିୟମ ଦ୍ୱାରା କରାଯାଇଥିବା ବ୍ୟତିକ୍ରମ ଏବଂ ସଂଶୋଧନ ସହିତ ସଂବିଧାନର ଭାଗ - ୯ ବା ନବମ ଅନୁସୂଚୀ ରେ ଲେଖାଥିବା ବ୍ୟବସ୍ଥା, ଯାହା ରାଷ୍ଟ୍ରପତିଙ୍କ ଅନୁମୋଦନ ହୋଇଥିବା ତାରିଖ ଠାରୁ ଏହି ଅଧିନିୟମକୁ ପ୍ରାପ୍ତ ହୋଇଛି, ଏହା ସେତେଦିନ ପର୍ଯ୍ୟନ୍ତ ବଳବତ୍ତର ରହିବ ଯେତେଦିନ ପର୍ଯ୍ୟନ୍ତ କୌଣସି ଉପଯୁକ୍ତ ବ୍ୟବସ୍ଥାଦ୍ୱାରା ସେ ସବୁକୁ ସଂଶୋଧିତ ବା ଉଚ୍ଛେଦ କରା ନ ଯାଇଛି ବା ଏହି ନିୟମ ପାଶ୍ /ଲାଗୁ ହେବାର ନିର୍ଦ୍ଦିଷ୍ଟ ସମୟ ନ ବଢ଼ିଛି ।

ଏହି ମର୍ମରେ, ଉଲ୍ଲିଖିତ ତାରିଖ ପୂର୍ବରୁ ଥିବା ପଞ୍ଚାୟତ ନିଜର ପୂର୍ବ କାର୍ଯ୍ୟକାଳ ଶେଷ ହେବା ପର୍ଯ୍ୟନ୍ତ କାର୍ଯ୍ୟ କରିବ । ଅଥବା ରାଜ୍ୟ ସରକାରଙ୍କ ଦ୍ୱାରା ବ୍ୟବସ୍ଥାପକ ବା ବିଧାନ ସଭାରେ ଅନୁଗୃହୀତ କୌଣସି ବିଲ୍ ଦ୍ୱାରା  ବିଧାନ ପରିଷଦର ଉଭୟ ଗୃହରେ ଏହି ସଂପର୍କିତ ବିଲ ବୈଧାନିକ ରୀତିରେ ଗୃହୀତ ହେବା ପରେ ଉକ୍ତ ପଞ୍ଚାୟତକୁ ଭଙ୍ଗ କରିଦିଆଯାଇ ପାରିବ ।

ଇରାଜୀରେ ଥିବା ମୂଳ ଅଧିନିୟମଟିର ଓଡ଼ିଆ ଅନୁବାଦ କରିବା ସମୟରେ ହୁଏତ କିଛି ଅର୍ଥଗତ ତ୍ରୁଟୀ ରହିଯାଇଥିବ ତେଣୁ ପାଠକଙ୍କ ନିମନ୍ତେ ମୂଳ ଇଂରାଜୀ ଅଧିନିୟମଟି ମଧ୍ୟ ସଂଯୋଗ କରୁଅଛୁ । - ପ୍ରକାଶକ

## The Provisions of the Panchayats

## (Extension to the Scheduled Areas) Act, 1996

(An Act to provide for the extension of the provisions of Part IX of the Constitution relating to the Panchayats to the Scheduled Areas.)

1. This Act may be called the Provisions of the Panchayats (Extension to the Scheduled Areas) Act, 1996.

2. In this Act, unless the context otherwise requires, "Scheduled Areas" means the Scheduled Areas as referred to in clause (I) of article 244 of the Constitution.

3. The provisions of Part IX of the Constitution relating to Panchayats are hereby extended to the Scheduled Areas subject to such exceptions and modifications as are provided in section 4.

4. Notwithstanding anything contained under Part IX of the Constitution, the Legislature of a State shall not make any law under that Part which is inconsistent with any of the following features, namely :-

(a) a State legislation on the Panchayats that may be made shall be in consonance with the customary law, social and religious practices and traditional management practices of community resources ;

(b) a village shall ordinarily consist of a habitation or a group of habitations or a hamlet or a group of hamlets comprising a community and managing its affair in accordance with traditions and customs;

(c) every village shall have a Gram Sabha consisting of persons whose names are included in the electoral rolls for the Panchayat at the village level;

(d) every Gram Sabha shall be competent to safeguard and preserve the traditions and customs of the people, their cultural identity, community resources and the costmary mode of dispute resolution;

(e) every Gram Sabha shall —

(i) approve the plans, programmes and projects for social and economic development before such plans, programmes and projects are taken up for implementation by the Panchayat at the village level;

(ii) be responsible for the identification or selection or persons

as beneficiaries under the poverty alleviation and other programmes;

(f) every Panchayat at the village level shall be required to obtain from the Gram Sabha a certification of utilisation of funds by the Panchayat for the plans, programmes and projects referred to in clause (e) :

(g) the reservation of seats in the Scheduled Areas at every Panchayat shall be in proportion to the population of the communities in the Panchayat for whom reservation is sought to be given under Part IX of the Constitution :

Provided that the reservation for the Scheduled Tribes shall not be less than one-half of the total number of seats :

provided further that all seats of Chairpersons of Panchayats at all levels shall be reserved for the Scheduled Tribes;

(h) the State Government may nominate persons belonging to such Scheduled Tribes as have no representation in the Panchayat at the intermediate level or the Panchayat at the district level :

Provided that such nomination shall not exceed one-tenth of the total members to be elected in that Panchayat;

(i) the Gram Sabha or the Panchayats at the appropriate level shall be consulted before making the acquisition of land in the Scheduled Areas for development projects and before resettling or rehabilitating persons affected by such projects in the Scheduled Areas; the actual planning and implementation of the projects in the Scheduled Areas shall be coordinated at the State level;

(j) planing and management of minor water bodies in the Scheduled Areas shall be entrusted to Panchayats at the appropriate level;

(k) the recommendations of the Gram Sabha or the Panchayats at the appropriate level shall be made mandatory prior to grant of prospective license or mining lease for minor minerals in the Scheduled Areas;

(l) the prior recommendation of the Gram Sabha or the Panchayats at the appropriate level shall be made mandatory for grant of concession for the exploitation of minor minerals by auction;

(m) while endowing Panchayats in the Scheduled Areas with such powers and authority as may be necessary to enable them to function as institutions of self-government, a State Legislature shall ensure that the Panchayats at the appropriate level and the Gram Sabha are endowed specifically with -

(i) the power to enforce prohibition or to regulate or restrict the sale and consumption of any intoxicant;

(ii) the ownership or minor forest produce;

(iii) the power to prevent alienation of land in the Scheduled Areas and to take appropriate action to restore any unlawfully alienated land of a Scheduled Tribe;

(iv) the power to manage village markets by whatever name called;

(v) the power to exercise control over money lending to the Scheduled Tribes;

(vi) the power to exercise control over institutions and functionaries in all social sectors;

(vii) the power to control over local plans and resources for such plans including tribal sub-plans;

(n) the State legislations that may endow Panchayats with powers and authority as may be necessary to enable them to function as institutions of self-government shall contain safeguards to ensure that Panchayats at the higher level do not assume the power and authority of any Panchayat at the lower level or the Gram Sabha;

(o) the State Legislature shall endeavour to maintain the pattern of the Sixth Schedule to the Constitution while designing the administrative arrangements in the Panchayats at district level in the Scheduled Areas,

5. Notwithstanding anything in Part IX of the Constitution with exceptions and modifications made by this Act, any provision of any law relating to Panchayats in force in the Scheduled Areas immediately before the date on which this Act receives the assent of the President, which is inconsistent with the provisions of Part IX with such exceptions and modifications shall continue to be in force until amended or repealed by a competent Legislature or other competent authority or until the expiration of one year from the date on which this Act receives the assent of the President.

Provided that all the Panchayats existing immediately before such date shall continue till the expiration of their duration unless sooner dissolved by a resolution passed to that effect by the Legislative Assembly of that State or, in the case of a State having Legislative Council by each House of the Legislature of that State.

# ଭାରତୀୟ ସମ୍ବିଧାନରେ ତଫସିଲଭୁକ୍ତ ଅଞ୍ଚଳ ନିମନ୍ତେ ଗ୍ରାମସଭାର ଶକ୍ତି

## (୨୪-୧୨-୧୯୯୬ ରୁ ଲାଗୁ ହୋଇଛି)

ଗ୍ରାମସଭା ଜନସାଧାରଣଙ୍କ ପରମ୍ପରା, ରୀତିନୀତି, ସାଂସ୍କୃତିକ ପରିଚୟ, ସାମୁଦାୟିକ ସମ୍ପଦ ଏବଂ ବିବାଦ ସମାଧାନ ନିମନ୍ତେ ପ୍ରଚଳିତ ପାରମ୍ପରିକ ରୀତିର ସଂରକ୍ଷଣ ତଥା ଏ ସବୁକୁ ବଜାୟ ରଖିବାକୁ ସକ୍ଷମ ହେବା ।

ଗ୍ରାମବାସୀଙ୍କ ସଂସ୍କୃତି, ଚାଲିଚଳନ, ରୀତିନୀତି ଉପରେ ବାହାର ସଂସ୍କୃତିକୁ ଜବରଦସ୍ତ ଲଦି ଦିଆଯିବା ଏଣିକି ଆଉ ଚଳିବ ନାହିଁ ।

### ଗ୍ରାମସଭାର କ୍ଷମତା : କେତୋଟି ବିଶେଷ ବ୍ୟବସ୍ଥା

**୧. ସାମାଜିକ** : ମଦ ନିଷିଦ୍ଧ, ମାଦକ ଦ୍ରବ୍ୟର ବିକ୍ରି ଏବଂ ବ୍ୟବହାର ବନ୍ଦ କରିବା କିମ୍ବା ନିୟନ୍ତ୍ରଣ କରିବା ।

**୨. ଗାଁର ଜମିବାଡ଼ିର ସୁରକ୍ଷା** : ଜବରଦଖଲ ଉପରେ ନିୟନ୍ତ୍ରଣ କରିବା, ବେଆଇନ ଭାବରେ କାହାରି ଜମି ଚାଲିଯାଇଥିଲେ ଫେରସ୍ତ ଆଣିବା ।

**୩. ଭୂ ଅର୍ଜନ (Land Acquisition)** : ସରକାର କୌଣସି ଯୋଜନା ନିମନ୍ତେ ଗାଁର କାହାରି ମଧ୍ୟ ଜମି ଅର୍ଜନ ବା ଅଧିଗ୍ରହଣ କରିବା ପୂର୍ବରୁ ଗ୍ରାମସଭାର ପରାମର୍ଶ ନେବାକୁ ବାଧ୍ୟ ।

**୪. ଲଘୁବନଜାତ ଦ୍ରବ୍ୟ** : ସଂଗ୍ରହ, ପ୍ରକ୍ରିୟାକରଣ ଓ ବିକ୍ରୟ ଉପରେ ଗ୍ରାମସଭାର ସମ୍ପୂର୍ଣ୍ଣ ମାଲିକାନା ।

**୫. ଜଳସମ୍ପଦ** : ଛୋଟ ଛୋଟ ଜଳଯୋଜନାର ନିର୍ମାଣ ଏବଂ ପରିଚାଳନା ।

**୬. ଗୌଣ ଖଣିଜ ପଦାର୍ଥ** :

(କ) ଯେ କୌଣସି ସର୍ଭେ କରିବା ପୂର୍ବରୁ ଗ୍ରାମସଭାର ଅନୁମତି ନେବାକୁ ପଡ଼ିବ ।

(ଖ) ଉତ୍ତୋଳନ ନିମନ୍ତେ ପଟ୍ଟା ଦେବା ପୂର୍ବରୁ ଅନୁମତି ନେବାକୁ ହେବ ।

(ଗ) ନିଲାମ ଦେବାଠାରୁ ଖଣି ଖୋଳିବା ଯାଏ ପ୍ରତି ପଦକ୍ଷେପରେ ଗ୍ରାମସଭାର ସୁପାରିଶ ନେବାକୁ ହେବ ।

**୭. ଗାଁର ବଜାର** : ପରିଚାଳନା ଏବଂ ନିୟନ୍ତ୍ରଣ କରିବାର ପୂର୍ଣ୍ଣ ଅଧିକାର ।

**୮. କରଜ, ଋଣଆଦାନ ପ୍ରଦାନ** : ଆଦିବାସୀଙ୍କୁ ଦିଆଯାଉଥିବା ସମସ୍ତ ପ୍ରକା ଋଣ ଆଦାନ-ପ୍ରଦାନ ଉପରେ ନିୟନ୍ତ୍ରଣ ।

**୯. ବିକାଶ କାର୍ଯ୍ୟକ୍ରମ** :

(କ) କାର୍ଯ୍ୟକାରିତା ହେବା ପୂର୍ବରୁ ମଞ୍ଜୁର କରିବା ।

(ଖ) ଉପକୃତ ବ୍ୟକ୍ତିଙ୍କୁ ଚିହ୍ନଟ କରିବାରେ ପୂର୍ଣ୍ଣ ଅଧିକାର ।

(ଗ) ବିସ୍ଥାପିତ ବ୍ୟକ୍ତିଙ୍କ ଥଇଥାନ ପୂର୍ବରୁ ପରାମର୍ଶ ନେବା ।

**୧୦. ଆର୍ଥିକ କ୍ଷମତା** :

(କ) ସ୍ଥାନୀୟ ଯୋଜନା ନିମନ୍ତେ ଆସୁଥିବା ଅର୍ଥ ଉପରେ ଗ୍ରାମସଭାର ପୂର୍ଣ୍ଣ ନିୟନ୍ତ୍ରଣ ।

(ଖ) ଗାଁରେ ହେଉଥିବା ପ୍ରତ୍ୟେକ ଖର୍ଚ୍ଚ ନିମନ୍ତେ ଗ୍ରାମସଭାର ପ୍ରମାଣପତ୍ର ନେବାକୁ ହେବ ।

**୧୧. ସଂସ୍ଥା ଏବଂ କର୍ମକର୍ତ୍ତା ଙ୍କ ଉପରେ ନିୟନ୍ତ୍ରଣ** : ସାମାଜିକ କ୍ଷେତ୍ର ସମ୍ପର୍କୀୟ ସମସ୍ତ ସଂସ୍ଥା ଏବଂ କର୍ମକର୍ତ୍ତାଙ୍କ ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ।